ଡକ୍ଟର ଦିନନାଥ ପାଠୀ ଜଣେ ଚିତ୍ରକର, ଲେଖକ ଓ ସଂସ୍କୃତି ଐତିହାସିକ । ଓଡ଼ିଆ ସାହିତ୍ୟରେ ଚିତ୍ରକଳାର ଅନୁରଣନ କରାଇବା ତାଙ୍କର ଲକ୍ଷ୍ୟ । ତାଙ୍କର ସମସ୍ତ ଲେଖା ଓ ଗବେଷଣାର ମଞ୍ଚ ହେଲା ଓଡ଼ିଆ ଚିତ୍ର ।

ଏବର୍ଷ ଏପ୍ରିଲ ମାସରେ ଭଦ୍ରକଠାରେ ଅନୁଷ୍ଠିତ ଜାତୀୟ କବି ବାଞ୍ଛାନିଧି ମହାନ୍ତିଙ୍କ ୧୧୮ତମ ଜୟନ୍ତୀ ସଭାରେ ଏହା ଭାଷଣ ଆକରରେ ପ୍ରଦାନ କରାଯାଇଥିଲା । ଏହି ଜୟନ୍ତୀ ଉତ୍ସବ ଜାତୀୟ କବି ବାଞ୍ଛାନିଧି ସ୍ମୃତି ପରିଷଦ ଦ୍ୱାରା ଆୟୋଜନ କରାଯାଇଥିଲା । ପରବର୍ତ୍ତୀ ସମୟରେ ଚିତ୍ର ସଂଯୋଗ କରାଯାଇ ବିଶ୍ୱମୁକ୍ତିର ପୂଜାସଂଖ୍ୟାରେ ଏହା ପ୍ରକାଶ ପାଇଲା ।

ବର୍ତ୍ତମାନ ସ୍ୱାଧୀନତା ସଂଗ୍ରାମୀ ଗୋବରା ଗାନ୍ଧି ବାଞ୍ଛାନିଧି ପଟ୍ଟନାୟକଙ୍କ ୧୧୫ତମ ଜନ୍ମ ଉତ୍ସବ ଅବସରରେ ବାଞ୍ଛାନିଧି ସ୍ମୃତି ପ୍ରତିଷ୍ଠାନ ଦ୍ୱାରା ୨୦୧୫ରେ ପ୍ରକାଶିତ ହୋଇଛି ।

ମୁଁ ଗୋଟିଏ ଅତି ଦୁଃଖଦ ଘଟଣାରୁ ମୋର ବକ୍ତବ୍ୟ ଆରମ୍ଭ କରୁଛି ।

ଆତତାୟୀର ଗୁଳିରେ ମହାତ୍ମା ଗାନ୍ଧିଙ୍କ ମହାପ୍ରୟାଣ ଘଟିଥାଏ । ଆମ ଘରେ ଥିବା ରେଡ଼ିଓ ପାଖରେ ଆମେ ସବୁ ଘେରି ହେଇ ବସିଥାଉ । ରେଡ଼ିଓ ଯେତେବେଳେ କଥା କହିବାକୁ ଆରମ୍ଭ କଲା ଆମ ଅନ୍ତର କୋହରେ ଭର୍ତ୍ତି ହେଇଗଲା । ଆଖିରେ ଲୁହ ଜକେଇ ଆସିଲା । ମନେହେଲା ଆମର କିଏ



ପତିତ ପାବନ (ଗାନ୍ଧି), କ୍ୟାଲେଣ୍ଡର ଚିତ୍ର

ଜଣେ ଆପଣାର ଲୋକ ଚାଲିଗଲେ । ଆମେ ମହାତ୍ମା ଗାନ୍ଧିଙ୍କୁ ସତ ସତ ଦେଖି ନଥାଉ । ତାଙ୍କୁ ଦେଖିଥାଉ କ୍ୟାଲେଣ୍ଡର ମାଧ୍ୟମରେ । ଗୋଟିଏ ନୁହେଁ ଶହ ଶହ କ୍ୟାଲେଣ୍ଡର ଛବି ମୁଦ୍ରିତ ହେଇ ବଜାରରେ ମିଳୁଥାଏ । ଜାତୀୟତାବାଦ ପ୍ରଚାର କରିବାରେ ଏହି ଚିତ୍ରଗୁଡ଼ିକ ମୁଖ୍ୟଭୂମିକା ଗ୍ରହଣ କରିଥାନ୍ତି ।

ଗୋଟିଏ ଚିତ୍ରର ବିଷୟ ହେଲା ପତିତପାବନ ଗାନ୍ଧି । ଛବିଟି ବମ୍ବେର ଚୋନିର ଆର୍ଟ ଷ୍ଟୁଡ଼ିଓ ଦ୍ୱାରା ମୁଦ୍ରିତ ହେଇଥାଏ । ଭାରତର ଏକ କାଳ୍ପନିକ ମାନଚିତ୍ର । ମଝିରେ ଗୋଟିଏ ପୂର୍ଣ୍ଣକୁମ୍ଭ । ମାନଚିତ୍ରର ମଥା ଉପରେ ରକ୍ତିମ



ବଳିଦାନ, କ୍ୟାଲେଣ୍ଡର ଚିତ୍ର

ଆଭା ଖେଳାଇ ସୂର୍ଯ୍ୟ ଉଦୟ ହେଉଛନ୍ତି । ତା' ଉପରକୁ ଆଣ୍ଠୁ ଛୁଟୁ ନଥିବା ଧଳା ଖଦଡ଼ ଧୋତି ଖଣ୍ଡେ ପିନ୍ଧି, ଦେହରେ ଚାଦରଟିଏ ଘୋଡ଼ାଇ ହୋଇ, ବାଁ ହାତରେ ବାଡ଼ି ଓ ଡାହାଣ ହାତରେ ଅଭୟ ମୁଦ୍ରା ପ୍ରଦର୍ଶନ କରି, ମୁହଁରେ ସ୍ମିତହାସ ଖେଳାଇ ଜାତିର ପିତା ଗାନ୍ଧି ଠିଆ ହେଇଛନ୍ତି । ଏଠି ସୂର୍ଯ୍ୟ ହେଉଛି ବିଶ୍ୱର ପ୍ରତୀକ ଯାହା ଉପରେ ସେ ଦଣ୍ଡାୟମାନ । ତାଙ୍କ ପାଦ ଭାରତର ଭୂଇଁ ଛୁଇଁଛି । ମହାତ୍ମା ଗାନ୍ଧି ଏଠାରେ ରାମଙ୍କ ଅବତାର । ଚିତ୍ରର ଡାହାଣପଟରେ ରାମ ଓ ସୀତା ଏବଂ ବାମ ଭାଗରେ ଜଣେ ପୂଜାରିଣୀ ପୂଜାଥାଳ ଧରି ଅର୍ଘ୍ୟ ବାଢୁଛି । ଚିତ୍ର ତଳେ ଗାନ୍ଧିଙ୍କ ପ୍ରିୟ ଭଜନ, "ରଘୁପତି ରାଘବ ରାଜାରାମ, ପତିତପାବନ ସୀତାରାମ" ଲିପିବଦ୍ଧ । ଏଭଳି ଚିତ୍ର ଦେଖିଲେ ମନରେ ଜାତୀୟତା ଭାବ ଜାଗିଉଠେ ଏବଂ ମହାତ୍ମା ଗାନ୍ଧି ଭାରତବର୍ଷର ପତିତମାନଙ୍କୁ ଉଦ୍ଧାର କରିବା ପାଇଁ ଉଭା ହୋଇଛନ୍ତି ବୋଲି ବିଶ୍ୱାସ ଜନ୍ମେ ।

ଭାରତର ସ୍ୱାଧୀନତା ଆନ୍ଦୋଳନର ପୂର୍ବ ଓ ପରର ଭାବଭୂମିକୁ ନେଇ ଯେତୋଟି ଚିତ୍ର ଅଙ୍କନ କରାଯାଇଛି । ସେଥିରେ 'ବଳିଦାନ' ଶୀର୍ଷକ ଚିତ୍ରଗୁଡ଼ିକ ସ୍ୱାଧୀନତା ପାଇଁ ଲଢ଼େଇ କରୁଥିବା, ନେତୃତ୍ୱ ନେଇଥିବା ଏବଂ ଅହିଂସା ଆନ୍ଦୋଳନକୁ ଜୀବନର ଧ୍ୟେୟ କରିଥିବା ଭାରତୀୟଙ୍କ ଅଖଣ୍ଡ ବିଶ୍ୱାସର ରୂପାୟନ । ଗୋଟିଏ ଚିତ୍ରରେ ମହାତ୍ମା ଗାନ୍ଧି ଯୋଡ଼ ହସ୍ତରେ ତାଙ୍କ ଆତତାୟୀକୁ ନମସ୍କାର କରୁଛନ୍ତି । ଗୁଳିବିଦ୍ଧ ଛାତିରୁ ରକ୍ତଧାର ନିଗିଡ଼ି ପଡୁଛି । ମୁଖରେ ବିଷାଦର ଲେଶମାତ୍ର ସଂକେତ ନାହିଁ । ସହାସ୍ୟ ବଦନ, ସେ ଗ୍ଲୋବ୍‌ରେ ଅଂକିତ ଭାରତବର୍ଷର ଶୀର୍ଷରେ ଠିଆ ହେଇଛନ୍ତି । ଭାରତର ବକ୍ଷ ରକ୍ତରଂଜିତ ଏବଂ ତା'ରି ଉପରେ ନାଥୁରାମ ଗଡ୍‌ସେଙ୍କ ବନ୍ଧୁକ । ଗାନ୍ଧିଙ୍କ ପୃଷ୍ଠ ଭାଗରେ ସର୍ବଧର୍ମ ସମନ୍ୱୟର ଆଭାସ । ଗୀର୍ଜା, ମନ୍ଦିର, ମସଜିଦ, ଗୁରୁଦ୍ୱାର ଏବଂ ବୌଦ୍ଧ ସ୍ତୁପର ଏକ ସମନ୍ୱିତ ଚିତ୍ର । ଏଭଳି ଚିତ୍ର ସମୂହ ଭାରତର ସ୍ୱାଧୀନତା ଆନ୍ଦୋଳନର ଦୃଶ୍ୟ ସମ୍ପଦ ଏବଂ ଭାରତୀୟ କଳାର ଏକ ମୁଖ୍ୟବିଭାବ, ସାହିତ୍ୟ ଭଳି ।

ମୁଁ ଏବେ ଦିଗପହଣ୍ଡି ଗଡ଼ର ବୈଦ୍ୟରାଜ ପାଠୀ ପରିବାରର ଅଗଣାକୁ ଆପଣମାନଙ୍କୁ ନେଇଯାଉଛି । ଆଉ ଯେଉଁସବୁ ଚିତ୍ରର ବର୍ଣ୍ଣନ ଆପାତତଃ ରହିଗଲା ସେଗୁଡ଼ିକର ବିଷଦ ଆଲୋଚନା ପରେ । ଏହି ପରିବାରର ପରଂପରାରେ କାବ୍ୟ କବିତା, ସଂଗୀତ ଓ ଚିତ୍ରକଳାର ଚର୍ଚ୍ଚା ପ୍ରାୟ ତିନିଚାରି ପୁରୁଷ ଧରି ରହି ଆସିଛି । ଆପଣମାନେ ଜାତୀୟ କବି ବାଞ୍ଛାନିଧି ମହାନ୍ତିଙ୍କ ସଂପର୍କରେ ଚର୍ଚ୍ଚା

କରିବା ପାଇଁ ମୋତେ ଏଠାକୁ ନିମନ୍ତ୍ରଣ କରିଦେଲା ପରେ ମୋର ବାଲ୍ୟସ୍ମୃତି ଅତି ଅଦ୍ଭୁତ ଭାବେ ଏହି ବିପ୍ଳବୀ କବିଙ୍କର ଚୁନିଆଦି ସହିତ ଯୋଡ଼ି ହେଇଯାଉଛି । ବାଞ୍ଛାନିଧି ମହାନ୍ତି ଜଣେ ସାଧାରଣ ବ୍ୟକ୍ତିବିଶେଷ ନଥିଲେ । ସେ ଥିଲେ ଏକ ସଂଘର୍ଷମୟ ସମୟର ଅଗ୍ନିବର୍ଷୀ ପ୍ରତିଭା । ସେ ଥିଲେ ସ୍ୱାଧୀନତାକାମୀ ସାଧାରଣ ଲୋକଙ୍କ ଆସ୍ପୃହାର ପ୍ରତୀକ । ତାଙ୍କ ଜ୍ୱାଳାମୟୀ କବିତାରେ ଲକ୍ଷେ ପ୍ରାଣର ଆବେଗ ଓଧାଣି ପାଣି ଭଳି ଟକ୍‌ମକ୍ ଫୁଟୁଥିଲା । ବାଞ୍ଛାନିଧି ମହାନ୍ତିଙ୍କ ସଂପର୍କରେ ବହୁକଥା କୁହାହେଇ ସାରିଛି । ତାଙ୍କ କବିତା ଏଠାରେ ଉପସ୍ଥିତ ବହୁ ଅତିଥିଙ୍କ ମୁଖସ୍ଥ ଥିବ । ମୁଁ ଯାହା କହିବି ତାହା ସଂପର୍କର କଥା ହେବ, ନିରୁତା କବିତା ନୁହଁ । ଭଦ୍ରକର ଭୌଗୋଳିକ ସରହଦ ବାହାରେ ଅନେକ ବାଞ୍ଛାନିଧି କିଭଳି ନିଜ ନିଜ ସାଧନାରେ ବିଦ୍ରୋହର ଓ ମୁକ୍ତିର ମଂଜି ବୁଣି ଯାଇଛନ୍ତି ସେମାନଙ୍କ ମଧ୍ୟରୁ ଜଣେ ଅଧେ କବିଙ୍କର କଥା କହିବା ପାଇଁ ମୁଁ ଚେଷ୍ଟା କରୁଛି ।

ଆମ ଘରେ ଗୋଟିଏ ଗ୍ରାମଫୋନ୍ ରେକର୍ଡ଼ ପ୍ଲେୟାର ଥାଏ । ଗାନ୍ଧିଙ୍କ ମୃତ୍ୟୁ ସମ୍ବାଦ ପରିବେଷଣ ପରର ଭାବଗମ୍ଭୀର ପରିବେଶକୁ ଲକ୍ଷ୍ୟରଖି ସେଦିନ ମଧ ଆଉଥରେ ରେକର୍ଡ଼ଟି ବଜେଇ ଦିଆହେଇଥିଲା ।

କାହୁଁ ଅଇଲେ ବିଦେଶୁ ବେପାରୀ
ସବୁ ସାଇଲେ ହେଲୁ ଆମେ ଭିକାରୀ
ଇଂରାଜୀ–ଇରାନୀ–ଜର୍ମାନୀ–ଜାପାନୀ
ଚିନା କାବୁଲି ଏ ଦେଶ ସେପାରି ।
ଚକ ଚକ ଚାଇନା  ମାଟିର ବାସନ
ସାରିଦେଲା ବୃତ୍ତି ଦେଶ କଂସାରି ।

ମୁଁ ସେତେବେଳକୁ ଆଠ ବର୍ଷର ପିଲା । ମୋର କିବା ଧାରଣା ଥିଲା ଏହା ବାଞ୍ଛାନିଧିଙ୍କ କବିତା ବୋଲି । ଯେଉଁ ଦୁଇଟି ଧାଡ଼ି ମୋ ମନରେ ଗଭୀର ରେଖାପାତ କରିଥିଲା, ତାହା ଥିଲା ଚକଚକ ଚାଇନା ମାଟିର ବାସନ, ସାରିଦେଲା ବୃତ୍ତି ଦେଶ କଂସାରି । ଜାତୀୟ ଲଳିତ କଳା ଏକାଡ଼େମୀରେ ୧୯୯୫ ମସିହାରେ ସଚିବ ହୋଇ ଯୋଗ ଦେବାର ପ୍ରଥମ ଦିନ ଚାଇନା କପ୍‌ରେ ଚାହା ପିଇବାକୁ ମନାକରି ଦେବା ଭିତରେ ପିଲାବେଳେ ଶୁଣିଥିବା ଏହି କବିତାର କ'ଣ ପ୍ରଚୋଦନା ଥିଲା ? ଲଳିତକଳା ଏକାଡ଼େମୀର ଦିଲ୍ଲୀରେ ଥିବା ଘଡ଼ିଗାଁରେ, ଲକ୍ଷ୍ନୌ, କଲିକତା ଓ ମେଡ୍ରାସ୍‌ଠାରେ ନିଜର ଷ୍ଟୁଡ଼ିଓ ଥିଲା ଯେଉଁଠି ଆମର ଶିଳ୍ପୀମାନେ ସିରାମିକ୍‌ରେ

ଚାହାକପ୍ ତିଆରୁ ଥିଲେ । ସେଇ ସବୁ ଥିଲା ଏଇ ମାଟିରୁ ତିଆରି ବାସନ, ତା'ପରେ ପରେ ବଜାର କିଣା ଚାଇନା କପ୍ ନୁହେଁ ଆମ ନିଜ ହାତ ତିଆରି ଚାହାକପ୍ ଲଳିତ କଳା ଏକାଡେ଼ମୀ ଅଫିସରେ ବ୍ୟବହୃତ ହେଲା । ଆପଣମାନେ ବାଞ୍ଛାନିଧି ପ୍ରେମୀ, ବଜାରରୁ କିଣା ଚାଇନା କପ୍‌ରେ ନିଶ୍ଚୟ ଚାହା ପିଉ ନଥିବେ । ଆପଣମାନଙ୍କ ସାଙ୍ଗରେ ମୋ ନିଜ ଚାହାପିଆ କଥା ବି ସାମିଲ ଅଛି । ରେଳ ବିଭାଗରେ ମନ୍ତ୍ରୀଥିବା ବେଳେ ମାଟିଖୁରୀରେ ଚାହା ପିଇବା କଥା ଯାହା ଲାଲୁପ୍ରସାଦ ଯାଦବ ପ୍ରଚଳନ କରିଥିଲେ, ସେଥିରେ ବାଞ୍ଛାନିଧିଙ୍କ କବିତାର ନିର୍ଯ୍ୟାସ ଥିଲା । ବିଚରା କୁମ୍ଭାର ବାପୁଡ଼ା ତ ମାଟିଖୁରୀ ବିକି ଦି'ପଇସା ରୋଜଗାର କରିପାରିବ । ସୁଇଡେ଼ନ୍‌ରେ ମୁଁ ଭାରତ ଉତ୍ସବର ଆୟୋଜନ କଲା ଅବସରରେ ଅଖା ବସ୍ତାରେ ଦୁଇ ବସ୍ତା ମାଟିଖୁରୀ ନେଇ ସେଇଠି ପହଞ୍ଚିଥିଲି । ମାଟିଖୁରୀ ସାଇବମାନଙ୍କୁ ଏମିତି ଭାବେ ପ୍ରଭାବିତ କରିଥିଲା ଯେ ଚାହା ପିଇସାରିଲା ପରେ ଭାରତର ସ୍ମୃତିକୁ ସାଇତି ରଖିବା ପାଇଁ ସେମାନେ କୋଟ ପକେଟରେ ପୁରାଇ ମାଟିଖୁରୀଗୁଡ଼ିକୁ ଘରକୁ ନେଇଯାଇଥିଲେ । ଆମେ ତ କୋଉଦିନୁ ସ୍ୱାଧୀନ ହେଇଗଲୁଣି ଏଣୁ ଏବେ ଜଗତୀକରଣର ପ୍ରଭାବରେ ବୋନ୍ ଚାଇନା କପ୍‌ରେ ଚାହା ପିଇଲେ ଚଳିବ । ଗାନ୍ଧି କିନ୍ତୁ ଆମ ଗାଆଁର କୁମ୍ଭାର ଓ କଂସାରିଙ୍କ କଥା କହୁଥିଲେ । ବାଞ୍ଛାନିଧି ମଧ ତାଙ୍କ କବିତାରେ ଗ୍ରାମ ସ୍ୱରାଜ କଥା କହୁଥିଲେ । ମନେହେଉଛି ଆମେ ଅବାଟରେ ବହୁଦୂର ମାଡ଼ି ଆସିଲୁଣି ।

ବାଞ୍ଛାନିଧିଙ୍କ କବିତାର ଆଉ ଦୁଇଟି ଧାଡ଼ି ମୋତେ ପିଲାବେଳେ ଖୁବ୍ ପ୍ରଭାବିତ କରିଥିଲା । ସେଇ ଦି'ଧାଡ଼ି ଏବେ ବି ମନେଅଛି ।

ଭଲା ଗୋଲ ଟେବୁଲ ପାଲା ଲାଗିଲାରେ
କାନ୍ଦି କାନ୍ଦି ଗାନ୍ଧିବୁଢ଼ା ଫେରିଲାରେ

ଚିତ୍ର ମାଧ୍ୟମରେ ଗାନ୍ଧିଙ୍କୁ ଆମେ ପୂରା ଚିହ୍ନି ସାରିଥିଲୁ । ମୁଁ ବଡ଼ ହେଲାପରେ ଯେତେଥର ଲଣ୍ଡନ ଯାଇଛି ବକିଂହାମ୍ ପେଲେସ୍ ଆଗରେ ଠିଆ ହେଇ ଗାନ୍ଧିଙ୍କ କଥା ଭାବିଛି । ୧୯୩୧ ମସିହାରେ ଗୋଲ ଟେବୁଲ ବୈଠକରେ ଯୋଗଦେବାକୁ ଗାନ୍ଧିଜୀ ବିଲାତ ଗଲେ । ଚର୍ଚ୍ଚିଲ ତାଙ୍କୁ ଅର୍ଦ୍ଧନଗ୍ନ ଫକୀର ଭାବେ ସେଠାରେ ସମ୍ମାନିତ କଲେ । କିନ୍ତୁ ବୈଠକରେ ଭାରତର ସ୍ୱାଧୀନତା ପ୍ରସଙ୍ଗ ନେଇ ଘୋଷଣାନାମା ପ୍ରକାଶିତ ହେଲା ନାହିଁ । ତେଣୁ ଗାନ୍ଧିବୁଢ଼ା କାନ୍ଦି କାନ୍ଦି ଭାରତ ଫେରିଆସିଲେ ।

ଆଉଜଣେ ଅର୍ଦ୍ଧନଗ୍ନ ଫକୀରଙ୍କ କଥା ଆପଣମାନଙ୍କୁ କହିବା ପାଇଁ ଇଚ୍ଛା ହେଉଛି । ସେ ଛୋଟକାଟର ବାଞ୍ଛାନିଧି ଥିଲେ । ନିଜ ସାମର୍ଥ୍ୟରେ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିସାରିଥିଲେ । ଆପଣ ଚାରଣ କବି କହୁଛନ୍ତି । ଆମେ କହୁଛୁ ଉଝଟ କବି । ତାଙ୍କର ପରିଚୟ ପଚାରିଲେ ସେ କହୁଥିଲେ-

ଦିଗ ଦିଶୁନାହିଁ ଦିଗପହଣ୍ଡି ଦିବସ ଅନ୍ଧାର

ହାଲ୍‌ଚାଲ୍ ବୁଝ କିସ ଜଂଗଲେ କରିଛି ଘର ।

ଅଣ୍ଟାରେ ଆଣ୍ଠୁ ନ ଡେଇଁଣ୍ଣୁ ଖଣ୍ଡିଏ ତନ୍ତବୁଣା ଧୋତି । ଖୋଲା ଦେହ, କାନ୍ଧରେ ଆଉ ଖଣ୍ଡେ ଗାମୁଛା । ନିଧଡ଼କ ବେପରୁଆ । ଅମାପ ସାହସ ଓ ଅତୁଟ ବିଶ୍ୱାସର ମଣିଷ ଥିଲେ ସେ, ଶ୍ୟାମସୁନ୍ଦର ପାଠୀ । ଛ ଫୁଟିଆ ନିଦା ଶାଳଗଛ ଭଳିଆ ଡେଙ୍ଗା, ତମ୍ବା ରଙ୍ଗର ଟାଣୁଆ ମଣିଷ । ଚିକ୍କଣ ଚନ୍ଦାମୁଣ୍ଡ, ଆଉ ଛାତି ଉପରକୁ ଉଲ୍ଲସି ଆସିଥିବା ଫରୁଫୁରିଆ ପାଚିଲା ଦାଢ଼ି ।

ଦିଗପହଣ୍ଡି ଗଡ଼ ପାଖ ପୁଞ୍ଜିକୟାଁ ଥିଲା ତାଙ୍କ ସାଧନାର ପୀଠ । ପୁଞ୍ଜିକୟାଁ ହିଁ ଗୀତରେ ଭଣିତା ହେଇଥିବା ଜଂଗଲ । ଗଡ଼ିଆ, ଅଗାଣ୍ଡିଆ ଶାସନ, ଅବୁଝା ଆଡ଼ବାୟା ରଜା ପାଇଁ ଦିଗପହଣ୍ଡି ଗଡ଼ତ ସହଜେ ଦିଗହରା । ପୁଞ୍ଜିକୟାଁ କିନ୍ତୁ ଦିଗନ୍ତ ବିସ୍ତାରୀ ସ୍ୱଭାବ ସୁଲଭ ଘନ ଘୋର ଜଂଗଲ ଯେପରି । ସତେ ଯିମିତି ପୁଞ୍ଜିକୟାଁ ଚେତନାର ଚଉହଦୀ ଆଉ ଦିଗପହଣ୍ଡି ଗଡ଼ ଦୀର୍ଘ ସୁସୁପ୍ତିର ଅନନ୍ତ ଅଜଗର । ସେ ବେଳର ଦିଗପହଣ୍ଡି ରାଜତନ୍ତ୍ରର ଉଷ୍ଣ ଉଗ୍ର ଶେଷ ସନ୍ତକ ଏବଂ ପୁଞ୍ଜିକୟାଁ ସୃଜନଶୀଳ କାବ୍ୟ ଭୂଖଣ୍ଡ । ଅଯୋଧ୍ୟାରେ ରାମଚନ୍ଦ୍ର ରାଜାହେବା ଆଗରୁ ପ୍ରକୃତିର ନିବିଡ଼ ସବୁଜ ପରାକାଷ୍ଠାରେ ନିଜକୁ ହକାଳି ଦେଇ ବିଜ୍ଞ, ହୃଦୟବାନ ହେଇ ପାରିଥିଲେ, କିନ୍ତୁ ଆମ ଗାଁର ଗଙ୍ଗରଜା ରାମଚନ୍ଦ୍ର ପୁଞ୍ଜିକୟାଁର ଫକୀରଙ୍କୁ ଚିହ୍ନୁ ଚିହ୍ନୁ ବେଳଗଡ଼ି ଯାଇଥିଲା । ରାମଚନ୍ଦ୍ର ଶେଷରେ ପୁଞ୍ଜିକୟାଁରେ ପହଞ୍ଚି ହନୁମାନ ପଲ୍ଲୀର (ପୁଞ୍ଜିକୟାଁର ଅନ୍ୟନାମ) ସାଧକଙ୍କୁ ପଚାରିଥିଲେ । ପାଢ଼ୀ ! ତମ ପାଇଁ କ'ଣ କଲେ ତମ ଜୀବନ ଦୁଃଖମୁକ୍ତ ହୋଇପାରିବ । ରାଜତନ୍ତ୍ରର ଜଣେ ନିପଟ ସମାଲୋଚକ ଅଳପ ହସିଦେଇ କହିଥିଲେ, ''ରାମରାଜ୍ୟରେ ଏମିତି ବା କିଏ ପ୍ରଜା ଦୁଃଖରେ ଅଛି ଯେ ସେ ତା' ଦୁଃଖ ଛାମୁଙ୍କ ଆଗରେ ବଖାଣିବ ।

ବସ୍ତୁ ଆବୋରିବାରେ, ଅଯଥା ଧନ ସଂପତ୍ତି ବଢ଼େଇବାରେ ସେ ଆଗ୍ରହୀ ନଥିଲେ । ତାଙ୍କର ନିଜ ଆବଶ୍ୟକତା ଖୁବ୍ ସୀମିତ ଥିଲା । ତେଣୁ ସେ ନିଃସ୍ୱ ଥାଇ ମଧ୍ୟ ପ୍ରାଣ ପ୍ରାଚୁର୍ଯ୍ୟରେ ଭରି ହେଇଥିଲେ । ତାଙ୍କ କବିତାର ଗୁରୁତ୍ୱପୂର୍ଣ୍ଣ ଦିଗ ହେଲା ଶାଣିତ ବ୍ୟଙ୍ଗ ।

ଲକ୍ଷ୍ୟ କରନ୍ତୁ :

ରଜା ନାହିଁ କି ରାଣୀ ନାହିଁ
ଦିଗପହଣ୍ଡି ନଅର
ମଣିଷ ନାହିଁ କି ସେବକ ନାହିଁ
ଜଙ୍ଗଲେ କରିଛି ଘର ।
ଦିଗ ଦିଶୁନାହିଁ ଦିଗପହଣ୍ଡି ଦିବସ ଅନ୍ଧାର
ହାଲଚାଲ ପଚାର କିସ ଜଙ୍ଗଲେ କରିଛି ଘର ।।

ନଳୀ ନାହିଁ କି ଖଣ୍ଡା ନାହିଁ
ଆନନ୍ଦିଆ ସର୍ଦ୍ଦାର
ପାଇକ ନାହିଁକି ରାଉତ ନାହିଁ
ବନମାଳୀ ଜପାଧାର ।
ଦିଗ ଦିଶୁନାହିଁ ଦିଗପହଣ୍ଡି ଦିବସ ଅନ୍ଧାର
ହାଲଚାଲ ପଚାର କିସ ଜଙ୍ଗଲେ କରିଛି ଘର ।।

ବଡ଼ଖେମୁଣ୍ଡି ରାଜାଙ୍କର
ଗାଈ ପୋଷା ଅତ୍ୟନ୍ତ ସୁନ୍ଦର ।
ଆଣ୍ଠୁଠାରୁ ପେଟ ଯାଏଁ ଶୁଖିଲା ଗୋବର ।
ନୂଆଁଣିଆ ଚାଳ ଯେତେ
ତାଙ୍କର ଆଧାର
ଦିଗ ଦିଶୁନାହିଁ ଦିଗପହଣ୍ଡି ଦିବସ ଅନ୍ଧାର
ହାଲ୍‌ଚାଲ୍ ପଚାର କିସ ଜଙ୍ଗଲେ କରିଛି ଘର ।।

ଉତ୍ତର ସାହିରେ ଝାଡୁ ବେହେରା
ଜାତିରେ କୁମ୍ଭାର ।
ନେଳିଆ ବନ୍ଧର

ପାଣ୍ଡାଙ୍କଳ ଶ୍ରୀଚନ୍ଦ୍ରଶେଖର ।
ଦିଗ ଦିଶୁନାହିଁ ଦିଗପହଣ୍ଡି ଦିବସ ଅନ୍ଧାର
ହାଲଚାଲ ପଚାର କିସ ଜଙ୍ଗଲେ କରିଛି ଘର ।।

ଏଇ କଥା ମିଛ ହେଲେ
ଛାମୁ, କଟା ହେଉ ମୋ ଶିର
ସତ ହେଲେ ଛାମୁ ମୋତେ
ଦେବେ ପୁରସ୍କାର ।
ଦିଗ ଦିଶୁନାହିଁ ଦିଗପହଣ୍ଡି ଦିବସ ଅନ୍ଧାର ।
ହାଲ ଚାଲ ପଚାର କିସ ଜଙ୍ଗଲେ କରିଛି ଘର ।।

ଗୋଟିଏ ଦୀର୍ଘ କବିତା ପ୍ରପଞ୍ଚନାଟକରୁ କିଛି ପଦର ଉଦ୍ଧୃତି ଦେଲି । ମୁଁ କବିତା ସଂଗ୍ରହ କରିବା ପାଇଁ ଦିଗପହଣ୍ଡି ଗଡ଼ରେ ପହଞ୍ଚିଲାବେଳକୁ ଚାଳିଶି ପଞ୍ଚଚାଳିଶି ବର୍ଷ ଡେରି ହେଇଯାଇଥିଲା । ଶ୍ୟାମସୁନ୍ଦର ପାଠୀଙ୍କ ସମସାମୟିକମାନେ ଆଉ ଗାଁରେ ନଥିଲେ । ଶ୍ୟାମସୁନ୍ଦର ଏକ ପୌରାଣିକ ଚରିତ୍ରରେ ପରିଣତ ହେଇସାରିଥିଲେ । ଯାହା ସମ୍ଭବ ହେଲା ତାକୁ ପଞ୍ଜୀକରଣ କରି "ପୁଞ୍ଜିକୟାଁର ଫକୀର" ବହିରେ ଲିପିବଦ୍ଧ କରିଦେଇଛି ।

ଅବଶ୍ୟ ଏହି ବହିରେ ଲିପିବଦ୍ଧ ଯୀଶୁଖ୍ରୀଷ୍ଟ ରଥ ଓ ଭାଲୁଶିକାର ଘଟଣା ଦୁଇଟି ଜାତୀୟତା ଓ ସ୍ୱାଧୀନତା ଆନ୍ଦୋଳନ ପ୍ରସଙ୍ଗରେ ଗୁରୁତ୍ୱପୂର୍ଣ୍ଣ । ଯୀଶୁଖ୍ରୀଷ୍ଟ ରଥରେ ଦିଗପହଣ୍ଡିର ଚିତ୍ରକାର ଘନଶ୍ୟାମ ମହାପାତ୍ର ଉଲଗ୍ନ ହେଇ କ୍ରୁସ୍‌କାଠ ଉପରେ ଝୁଲି ରହିବା ଏବଂ ଯୀଶୁଖ୍ରୀଷ୍ଟଙ୍କ ଅସହାୟ ରୂପ ମାଧ୍ୟମରେ ଇଂରାଜୀ ଜାତିକୁ ଚେତାବନୀ ଦେବାର ପ୍ରୟାସ କଳାତ୍ମକତା ଦୃଷ୍ଟିରୁ ଉଲ୍ଲେଖନୀୟ । ଏଥିରେ ରହିଥିବା ଶାଣିତ ବ୍ୟଙ୍ଗର ତର୍ଜମା ସୁଦୂର ପ୍ରସାରୀ । ହେ ଇଂରାଜୀ ପ୍ରଶାସକ ! ତମେ ଏ ଦେଶ ଛାଡ଼ି ନଗଲେ ତମକୁ ବିଚ୍ ରାସ୍ତାରେ ଯୀଶୁଙ୍କ ଭଳି କଣ୍ଟାବିଦ୍ଧ କରି ଗଛରେ ଟାଙ୍ଗିଦେବୁ । ଭାଲୁ ଶିକାର ପ୍ରସଙ୍ଗରେ ଭାଲୁଶିକାର କରିବାକୁ ଯାଇଥିବା ଇଂରାଜୀ ସାହେବକୁ ଦଲ୍‌ଦଲିରେ ଫସାଇ ଦେଇ ସାରା ରାତି ତାକୁ ଯେଭଳି ମରଣାନ୍ତକ ପୀଡ଼ା ଦିଆଗଲା ଓ ସେହି ମାଡ଼ରେ ସିଏ କିଭଳି ଦେଶଛାଡ଼ି ଇଂଲଣ୍ଡ ପଳେଇ ଗଲା ତା'ର ଏକ ରସାଣିତ ବର୍ଣ୍ଣନା ପୁଞ୍ଜିକୟାଁର ଫକୀର ବହିରେ ଅଛି ।

ଉପରଠାଉରିଆ ଭାବେ ଦେଖିଲେ ମନେହେବ ଏ ସବୁ ସଂଗତି ଭିତରେ ଉଗ୍ର ଜାତୀୟତାବାଦ ନାହିଁ । କିନ୍ତୁ ଗୋଟିଏ ଗଡ଼ଜାତରେ (ଅବଶ୍ୟ ଦିଗପହଣ୍ଡି ଜମିଦାରୀ ବୋଲି ପରିଚିତ ହେଉଥିଲା ଓ ମେଡ୍ରାସ ପ୍ରେସିଡେନ୍‌ସିର ଅଂଶବିଶେଷ ଥିଲା) ଘଟିଥିବା ଏ ସବୁ ଘଟଣାର ଗଭୀର ଅନୁଶୀଳନ କଲେ ଏହାର କଳାତ୍ମକତା ଯେ ଜାତୀୟତାବାଦ ପ୍ରକାଶ କରିବାରେ ଅନ୍ୟ ଏକ ବଳିଷ୍ଠ ମାଧ୍ୟମ ଥିଲା ତାହା ସ୍ପଷ୍ଟ ହୋଇଯିବ । ପ୍ରଜ୍ଞାପନ ମେଢ଼ ବା ରଥ ଭଳି ଏକ ସୋସିଏଲ୍ ମିଡ଼ିଆକୁ ଆଧାର କରି ବିଷୟବସ୍ତୁର ପରିକଳ୍ପନା ଅଭିନବ । ଓଡ଼ିଶାର ଅନ୍ୟାନ୍ୟ ସହର ଓ ଗାଆଁ ଗଣ୍ଡାରେ ମଧ ଏଭଳି ଘଟଣାମାନ ଘଟିଥିବ ଯାହା ସାହିତ୍ୟ ଓ ଚିତ୍ରକଳାରେ ପ୍ରତିଫଳିତ ହୋଇପାରି ନାହିଁ ।

ମୋଟାମୋଟି ଭାବେ ଦେଖିବାକୁ ଗଲେ ଓଡ଼ିଶାର ଜାତୀୟତା ଆନ୍ଦୋଳନ ସାହିତ୍ୟ ତୁଳନାରେ ଚିତ୍ରକଳାରେ ଅନୁରଣନ ଅତ୍ୟନ୍ତ କ୍ଷୀଣ । ଜେଲ୍ ଭିତରେ ଓଡ଼ିଆ ଚିତ୍ରଶିଳ୍ପୀ ଜଗନ୍ନାଥ ଦାସ ବନ୍ଦୀ ଜୀବନକୁ ଲାଘବ କରିବା ପାଇଁ ଏବଂ ସହବନ୍ଦୀମାନଙ୍କର ଦୁଃଖ ଦୁର୍ଦ୍ଦଶାରେ ସହଭାଗୀ ହେବା ପାଇଁ ଚିତ୍ରକଳାର ଆଶ୍ରୟ ନେଇଛନ୍ତି । ତାଙ୍କ ଆତ୍ମଜୀବନୀରେ ସେ ଲେଖିଛନ୍ତି, ''ଜେଲ୍ ସୁପରିନ୍‌ଟେନ୍‌ଡେଣ୍ଟ ମେଜର ଓନିଲ ସାହେବ ଯେତେବେଳେ ପରିଦର୍ଶନକୁ ଆସନ୍ତି ମୁଁ କାନ୍ଥରେ ଥିବା ୱାଲ୍ ବ୍ଲାକ୍‌ବୋର୍ଡ଼ରେ ବ୍ୟଙ୍ଗଚିତ୍ର ଅଙ୍କନ କରି ଆମ ଅବସ୍ଥା ଦେଖାଇ ଦିଏ । ସୁପରିନ୍‌ଟେନ୍‌ଡେଣ୍ଟ ରାଗି ମୋ ଉପରେ ଲାଲ ହୋଇଯାଆନ୍ତି । ଯେଉଁଦିନ ବ୍ରିଟିଶ କେଶରୀଙ୍କ ଲାଙ୍ଗୁଡ଼ରେ ନିଆଁ ଲଗାଇ ଦେଇ ଜଣେ ଜାତୀୟବୀର ତାକୁ ଦଉଡ଼ାଉଛି ଛବି କଲି, ଛବି ଅଙ୍କାର ସେଦିନ ମୋର ଗୋଟାଏ ସ୍ମରଣୀୟ ଦିନ । ଜେଲର କହିଲେ ମୁଁ ଯଦି ଆଉ ଏ ଭଳି ଛବି କରେ ଗୁରୁତର ଦଣ୍ଡ ପାଇବି । ମୁଁ ଭାବିଲି ସାମାନ୍ୟ କେତୋଟି ଗାର ତା' ପୁଣି ମେଜର ସାହେବଙ୍କ ଉପରେ ଏଭଳି ପ୍ରଭାବ ପକାଇ ପାରିଲା । ଆଜି ଅନେକ ସହବନ୍ଦୀମାନଙ୍କର ମୂଳା ଅଭିଯାନ, ସାରୁଚକଟା, ମୁଣ୍ଡବିହୀନ ଗୋଷ୍ଠୀ, ମାଲିସ ପ୍ରଭୃତି ଚିତ୍ର ମନେଥିବ ।'' ଏ ସବୁ ଚିତ୍ର ଏବେ ବି ଦୁଷ୍ପ୍ରାପ୍ୟ । ଏହି କାର୍ଯ୍ୟଟି କରିବ କିଏ ? ଜଗନ୍ନାଥ ଦାସ ତ ଆଉ ଆମ ଗହଣରେ ନାହାନ୍ତି ।

ଭାରତୀୟ ଜାତୀୟତା ଆନ୍ଦୋଳନ ଓ ସ୍ୱାଧୀନତା ପାଇଁ ଅହିଂସ ସଂଗ୍ରାମକୁ ଆଧାର କରି ଜାତୀୟ ସ୍ତରରେ ଚିତ୍ରକଳାକୁ ନେଇ ବହୁ ଉଦ୍ୟମ ହୋଇଛି । ସେଥିରେ ମୁଖ୍ୟଭୂମିକା ଗ୍ରହଣ କରିଥିଲେ ରବୀନ୍ଦ୍ରନାଥ, ଅବନୀନ୍ଦ୍ର ନାଥ ଓ



ଭାରତମାତା, ଶିଳ୍ପୀ ଅବନୀନ୍ଦ୍ରନାଥ, ଧୌତଚିତ୍ର

ନନ୍ଦଲାଲଙ୍କ ଭଳି ବିଶିଷ୍ଟ ଶିଳ୍ପୀମାନେ । ପାଶ୍ଚାତ୍ୟ କଳାର ପ୍ରଭାବକୁ ପ୍ରତିରୋଧ କରିବା ପାଇଁ, ବିଶେଷ କରି ବ୍ରିଟିଶ ରାଜର ଭାରତୀୟ ଶୈଳ୍ପିକ ରୁଚି ଉପରେ ସଂଘାତକୁ ରୋକିବା ପାଇଁ ଏକ ନୂତନ କଳାର ଅଭ୍ୟୁଦୟ ହେଲା । କାଳୀଘାଟର ପଟୁଆମାନେ କାଠ ଖୋଦାଇ ଏବଂ ଜିଙ୍କ୍ ବ୍ଲକ୍‌ର ସାହାଯ୍ୟ ନେଇ ସେହି ସୟରେ ମୁଣ୍ଡଟେକି ଉଠୁଥିବା ଛାପାଖାନାମାନଙ୍କର ସମକକ୍ଷ ହେବା ପାଇଁ ଚେଷ୍ଟା କଲେ । ଲଣ୍ଡନର ସାଉଥ କେନ୍‌ସିଙ୍ଗଟନ୍ ଠାରେ ଥିବା ସ୍କୁଲ ଅଫ୍ ଇଣ୍ଡଷ୍ଟ୍ରିଆଲ୍ ଆର୍ଟ ଢାଞ୍ଚାରେ ଭାରତରେ କଲିକତା, ମାଡ୍ରାସ୍ ଓ ବମ୍ବେରେ ନବପ୍ରତିଷ୍ଠିତ ଆର୍ଟସ୍କୁଲ ମାନଙ୍କରେ ଏକାଧରଣର ୟୁନିଫର୍ମ, ସିଲାବସ୍ ପାଠ୍ୟକ୍ରମ ଚାଲୁ କରାଗଲା । ଅତ୍ୟନ୍ତ ଦୁଃଖର କଥା ପାରଂପରିକ ଶିଳ୍ପୀଙ୍କ ପରିବାରର ପିଲାମାନେ ଅର୍ଥାଭାବରୁ ଏହିସବୁ ବିଦ୍ୟାଳୟମାନଙ୍କରେ ପଢ଼ିପାରିଲେ ନାହିଁ । କେବଳ ଇଂରାଜୀ ପାଠୁଆ ପିଲାମାନେ ଏହି ସବୁ ଅନୁଷ୍ଠାନରେ ଭର୍ତ୍ତି ହେଲେ । ଏସବୁ ଘଟଣାର ମୋଟାମୋଟି ଶହେ ବର୍ଷ ପରେ ୧୯୫୭ରେ  ଓଡ଼ିଶାରେ ଆଧୁନିକ କଳା ଶିକ୍ଷା ପାଇଁ ଆମ ସରକାର ବିଦ୍ୟାଳୟ ଖୋଲିଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା ଏହି ବିଦ୍ୟାଳୟରେ ମଧ୍ୟ ଉପନିବେଶୀୟ ଧାରାରେ କଳାଶିକ୍ଷା ଦିଆଗଲା ।

ପାଶ୍ଚାତ୍ୟ କଳାର ପ୍ରତିରୋଧରେ ଶାନ୍ତିନିକେତନର କଳା ଭବନରେ ଯେଉଁ କଳାର ଅଭ୍ୟୁଦୟ ହେଲା ତାହାଥିଲା ସ୍ୱଦେଶୀ କଳା । ଏଥିରେ ଭାରତୀୟ ଦୃଶ୍ୟକଳା ଐତିହ୍ୟର ପ୍ରସିଦ୍ଧ ଚିତ୍ରାବଳୀ- ଅଜନ୍ତାର ଭିତ୍ତିଚିତ୍ର, ଏବଂ ମୋଗଲ, ରାଜପୁତ ଓ ପାହାଡ଼ୀ ଚିତ୍ରର ରୂପ ଗଢ଼ଣ, ବର୍ଣ୍ଣ ଯୋଜନା ଓ ନାନ୍ଦନିକ ବୋଧ ରହିଲା । ରବୀନ୍ଦ୍ରନାଥ ଗୋଟିଏ ଏସୀୟ କଳା ବା ପ୍ରାଚ୍ୟକଳାର ଅଭ୍ୟୁତ୍ଥାନ ଚାହୁଁଥିଲେ । ଯୁଦ୍ଧରେ ହାରିଯିବା ପରେ ଜାପାନର କଳା ମଧ୍ୟ ବିଦେଶୀ କଳାର ତାଡ଼ନାରେ ହନ୍ତସନ୍ତ ହେଉଥିଲା । ଜାପାନର ବିଶିଷ୍ଟ ଶିଳ୍ପୀ ଓକାକୁରା ଭାବୁଥିଲେ ଯେଉଁ ଭାରତବର୍ଷ ବିଶ୍ୱକୁ ବୌଦ୍ଧ କଳାର ସ୍ୱାଦୁ ଚଖେଇଛି, ସିଏ ହିଁ ପ୍ରାଚ୍ୟ କଳାର ନେତୃତ୍ୱ ନେଇପାରିବ । ସ୍ୱଦେଶୀକଳା ଓ ପ୍ରାଚ୍ୟକଳାର ଆଭିମୁଖ୍ୟ ଏକ ଥିଲା ।

ଜାତୀୟବାଦୀ କଳାର ପ୍ରଥମ ଉଲ୍ଲେଖନୀୟ କୃତି ହେଲା ଅବନୀନ୍ଦ୍ରନାଥ ଠାକୁରଙ୍କ ଦ୍ୱାରା ୧୯୦୫ ରେ ଚିତ୍ରିତ ଭାରତ ମାତା । ବଙ୍ଗଭଙ୍ଗକୁ କେନ୍ଦ୍ର କରି ୧୯୦୫ ଅକ୍ଟୋବର ମାସରେ ଗୋଟିଏ ବଡ଼ ଧରଣର ଜନ ଆନ୍ଦୋଳନର ସୂତ୍ରପାତ ହେଲା । ଏହି ଆନ୍ଦୋଳନର ମୁଖ୍ୟତଃ ଦୁଇଟି ଆଭିମୁଖ୍ୟ ଥିଲା । ଗୋଟିଏ ହେଲା ସ୍ୱରାଜ ଓ ଅନ୍ୟଟି ହେଲା ସ୍ୱଦେଶୀ । ଅବନୀନ୍ଦ୍ରନାଥ ଠାକୁରଙ୍କ

ପ୍ରତିକ୍ରିୟା ଗୋଟିଏ ଅଭୂତପୂର୍ବ ଚିତ୍ରର ରୂପନେଲା । ତାହାହେଲା ଭାରତମାତାଙ୍କ ଚିତ୍ର । ଭାରତମାତାଙ୍କ ସ୍ୱରୂପ ଜଣେ ବଙ୍ଗ ଲଳନା ଭଳି ଦେଖାଯାଉଥିଲା । ତାଙ୍କ ଚାରୋଟି ହାତରେ ଖାଦ୍ୟ, ବସ୍ତ୍ର, ଶିକ୍ଷା (Secular Knowledge) ଏବଂ ମାଳା (ଯାହାକି ଆଧାତ୍ମିକ ଜ୍ଞାନର ପ୍ରତୀକ ଥିଲା) ଆୟୁଧ ଭଳି ଶୋଭା ପାଉଥିଲା । ସେ ଗୋଟିଏ ପ୍ରସ୍ଫୁଟିତ ପଦ୍ମ ଉପରେ ଠିଆ ହୋଇଥିଲେ ।

ଭାରତର ଶିଳ୍ପୀମାନେ ୧୯୧୪ ମସିହା ସରିକି ବ୍ୟକ୍ତିଗତ ଶୈଳୀର ବିଭେଦ ଭୁଲିଯାଇ ଗୋଟିଏ ସ୍ୱଦେଶୀ ଶୈଳୀକୁ ଆପଣାଇଲେ । ସେମାନେ ୧୯୧୪ ମସିହାରେ ଲଣ୍ଡନ ଓ ପ୍ୟାରିସ୍ ଠାରେ, ୧୯୨୩ ମସିହାରେ ବର୍ଲିନ୍ ଠାରେ ପୁଣି ୧୯୨୪ ରେ ଲଣ୍ଡନ ଠାରେ ସ୍ୱଦେଶୀ ଚିତ୍ରର ପ୍ରଦର୍ଶନୀମାନ ଅନୁଷ୍ଠିତ କରାଇଲେ । ଏହି ପ୍ରଦର୍ଶନୀଗୁଡ଼ିକର ପ୍ରଭାବ ଇଉରୋପରେ ଭଲଭାବରେ ଅନୁଭୂତ ହେଲା । ଜଣେ ଇଂରାଜୀ ସମାଲୋଚକ ଏହି ଚିତ୍ରକଳାକୁ ଭାରତ ପକ୍ଷରୁ ବିଶ୍ୱକୁ ଦାନ ବୋଲି ଅଭିହିତ କଲେ । ଜର୍ମାନ ଦେଶ ପ୍ରଥମ ବିଶ୍ୱଯୁଦ୍ଧରେ ପରାସ୍ତ ହେଇଯାଇ ଥିବାରୁ ଭାରତର ପଟ ନେଇ ଏହି ପ୍ରଦର୍ଶନୀକୁ ଗୋଟିଏ ପ୍ରଭାବଶାଳୀ ସାଂସ୍କୃତିକ ବିପ୍ଳବର ଆଖ୍ୟା ଦେଲା । ଏହି ଚିତ୍ରଶୈଳୀର ମୁଖ୍ୟ ଅବଲମ୍ବନ ହେଲା ଜାତୀୟଦାବୀ କଥାବସ୍ତୁ, ଯେଉଁ କଥା ଭିତରେ ଗୋଟିଏ ଜାତିର ଦୁଃଖ, ନୈରାଶ୍ୟ ଓ ବିଷାଦର କାହାଣୀ ପ୍ରତିଫଳିତ ହେଉଥିଲା । ଏହି ଚିତ୍ରମାନଙ୍କରେ ପ୍ରଦର୍ଶିତ ଜନତା ଅସ୍ଥି କଂକାଳସାର । ଏହି ଚିତ୍ର ଗୋଟିଏ ପରାଧୀନ ଓ ନିଷ୍ପେସିତ ଜାତିର ବୋଲି ସ୍ପଷ୍ଟ ହେଇଯାଉଥିଲା । ଏହି କଳା ସଂପର୍କରେ ଯାହା କୁହାଯାଉ ପଛେ ଏହା ହିନ୍ଦୁଧର୍ମ ପ୍ରତି ଅନୁରକ୍ତ ଥିଲା ଏବଂ ଏକ ହିନ୍ଦୁ ମୌଳବାଦୀ ଜାତୀୟତାର ସ୍ୱର ବହନ କରୁଥିଲା । ଏହା ଫଳରେ ମୁସଲମାନ୍ ଓ ଅନ୍ୟ ସଂପ୍ରଦାୟର ଲୋକଙ୍କ ମଧ୍ୟରେ ନିରାଶା ଭାବ ଦେଖା ଦେଲା । ଲାହୋରର ଜଣେ ପ୍ରସିଦ୍ଧ ଚିତ୍ରକର ଅବଦୁର ରେହମନ୍ ଚୁଗ୍‌ତାଇ (୧୮୯୭-୧୯୭୫) ମୁସଲମାନ୍‌ଙ୍କ ରାଜନୈତିକ ଓ ସାଂସ୍କୃତିକ ଅସ୍ମିତାକୁ ବଞ୍ଚେଇବା ପାଇଁ କିଛି ଚିତ୍ର ଅଙ୍କନ କଲେ । ସେ ଓମରଖାୟାମଙ୍କ ରୁବାୟତ ଏବଂ ଅନ୍ୟାନ୍ୟ ମୁସ୍‌ଲିମ୍ ଗପକୁ ନେଇ ସେମାନଙ୍କ ଐତିହ୍ୟର ଜୟଗାନ କଲେ । ସେ କିନ୍ତୁ ନୂତନ ଭାବେ ଗଢ଼ି ଉଠିଥିବା ପ୍ରାଚ୍ୟକଳାର ସୁଯୋଗ ନେଲେ ।

୧୯୨୦ ସରିକି ପାଶ୍ଚାତ୍ୟ ଏକାଡ଼େମିକ୍ କଳା ଅବକ୍ଷୟମୁଖୀ ହେଲା । ତା' ସହିତ Pan-Asianism ବା ପ୍ରାଚ୍ୟଚିନ୍ତନ ମହାତ୍ମା ଗାନ୍ଧିଙ୍କର ପସନ୍ଦ

ହେଲାନି । ୧୯୨୧ ରେ ଗାନ୍ଧିଜୀ ପୁଣି ଜନ ଆନ୍ଦୋଳନର ଡାକରା ଦେଲେ । ବେଙ୍ଗଲରେ ଅନୁଷ୍ଠିତ Nationalistic Art Fair ଭାରତର ଅଳଂକରଣ କଳା (Decorative Art) କୁ ଯଥୋଚିତ ସମ୍ମାନ ଆଣିଦେଲା । ପ୍ରଥମଥର ପାଇଁ ମହାତ୍ମା ଗାନ୍ଧି ସତ୍ୟାଗ୍ରହ ଆନ୍ଦୋଳନ ଭିତରେ ଗ୍ରାମ୍ୟକଳାକୁ ସ୍ଥାନ ଦେଲେ । ଯାହା ଫଳରେ ଗ୍ରାମ୍ୟକଳା ମଧ୍ୟ ସ୍ୱାଧିନତା ଆନ୍ଦୋଳନର ଅଂଶ ହୋଇଗଲା । ପ୍ରଥମଥର ପାଇଁ ସ୍ୱାଧୀନତା ଆନ୍ଦୋଳନରେ ଗ୍ରାମ୍ୟଶିଳ୍ପୀଙ୍କ ସ୍ୱର ଶୁଣାଗଲା । ସ୍ୱଦେଶୀ କଳାର ପ୍ରଥମ ଚରଣରେ ଅତୀତ ଓ ଐତିହ୍ୟ ପ୍ରେରଣାର ଉତ୍ସ ହୋଇଥିବା ସ୍ଥଳେ ଦ୍ୱିତୀୟ ଚରଣରେ ଏହି ମାଟି ତା'ର ସଂଗୀତ ଶୁଣେଇବାକୁ ଲାଗିଲା । ରବୀନ୍ଦ୍ରନାଥଙ୍କ ଶାନ୍ତିନିକେତନର ପ୍ରାଣରେ ସାନ୍ତାଳମାନେ ରସ ସଂଚାର କଲେ । ଶିକ୍ଷିତ ବଙ୍ଗବାସୀ ଏ ଯାଏଁ କାଳୀଘାଟ ପଟୁଆକୁ ଯେଉଁଭଳି ହେୟ ଦୃଷ୍ଟିରେ ଦେଖୁଥିଲେ, ସେହି ଆଭିମୁଖ୍ୟର ପରିବର୍ତ୍ତନ ହେଲା ।

ରବୀନ୍ଦ୍ରନାଥ ଠାକୁର (୧୮୬୧–୧୯୪୧) ଭାରତର ପ୍ରଥମ ଶିଳ୍ପୀ ଯିଏ ଗ୍ରାମ୍ୟକଳାର ଆଦିମତାକୁ ନିଜ ଚିତ୍ରରେ ବ୍ୟବହାର କଲେ । ସେ ହିଁ ଭାରତରେ ଆଧୁନିକ କଳାର ପୁନାଦି ପକାଇଲେ । ତାଙ୍କ ପରେ ପରେ ଅମୃତା ଶେରଗିଲ୍ (୧୯୧୩–୧୯୪୧)ଙ୍କ ଗ୍ରାମ୍ୟ ଜୀବନର ଚିତ୍ରଗୁଡ଼ିକ ଭାରତୀୟ ଆଧୁନିକ କଳାର ଆଭିମୁଖ୍ୟକୁ ଆହୁରି ଦୃଢ଼ କଲା ।

ରାଜା ରବି ବର୍ମା (୧୮୪୮–୧୯୦୬) ଙ୍କୁ ଏକ ନବକଳାର ଜନକ କୁହାଯାଏ । ସେ ପ୍ରଥମ କରି ଭାରତୀୟ ବିଷୟବସ୍ତୁ ଓ କାହାଣୀକୁ ପାଶ୍ଚାତ୍ୟ ଢଙ୍ଗରେ ଚିତ୍ର କରିବାକୁ ଲାଗିଲେ । କେରଳ ଟ୍ରାଭାନ୍‌କୋର ରାଜ ପରିବାରର ରବି ବର୍ମା ନିଜ ପରିବାରର ଇଚ୍ଛା ବିରୁଦ୍ଧରେ ଚିତ୍ରକଳା ଭଳି ଏକ ନିକୃଷ୍ଟ ବୃତ୍ତିକୁ ଆପଣେଇଲେ । ସେ କିନ୍ତୁ ସମୟ କ୍ରମେ ଭାରତ ବର୍ଷର ଜଣେ ବିଖ୍ୟାତ Portrait Painter, ଆଲେଖ୍ୟ ଚିତ୍ରଣ ଶିଳ୍ପୀଭାବେ ପରିଚିତ ହେଲେ । ବର୍ମାଙ୍କ ଚିତ୍ର ମଧ୍ୟରେ ଇତିହାସର ଓ ଐତିହ୍ୟର ଚର୍ଚ୍ଚାଥିବାରୁ ଜାତୀୟବାଦୀମାନେ ସେ ସବୁ ଚିତ୍ରକୁ ପସନ୍ଦ କରୁଥିଲେ । ସେ ପ୍ରଥମେ ବମ୍ବେରେ ଓ ପରେ ବମ୍ବେ ପ୍ଲେଗ ଦ୍ୱାରା ଆକ୍ରାନ୍ତ ହେବା ପରେ ବମ୍ବେ ପୁନେ ରାସ୍ତାର ଲୋନାଭାଲାଠାରେ ନିଜର ଲିଥୋ ପ୍ରେସ୍ ବସାଇ ନିଜ ଚିତ୍ରଗୁଡ଼ିକୁ ମୁଦ୍ରଣ କରି ତା'ର ବହୁଳ ପ୍ରସାର କଲେ । ଆଜିକାଲି ମଧ୍ୟ ଓଡ଼ିଶାର ସମ୍ଭ୍ରାନ୍ତ ଘରମାନଙ୍କରେ ରବିବର୍ମାଙ୍କ ହାତ ଅଙ୍କାଚିତ୍ରର ଲିଥୋ ପ୍ରିଣ୍ଟ ଦେଖିବାକୁ ମିଳେ । ରବିବର୍ମା ପ୍ରେସର ଗୋଟିଏ



ଭାରତମାତା (ପ୍ରେମର ବାର୍ତା), ରବି ବର୍ମା ପ୍ରେସ୍, ମାଲୟଲୀରେ ମୁଦ୍ରିତ




ଭାରତ ମାତା, ନିଉ ଇଣ୍ଡିଆ ରେୟନ୍ ମିଲ୍‌ର ବିଜ୍ଞାପନ ଚିତ୍ର, ବମ୍ବେରେ ମୁଦ୍ରିତ

ବିରାଟ ଇତିହାସ ଅଛି ଯାହା ଜାତୀୟବାଦୀ ଚିନ୍ତାକୁ ଲୋକଙ୍କ ମଧ୍ୟରେ ପରିଚିତ କରିବା ପାଇଁ ଚେଷ୍ଟା କରିଛି । ଅବଶ୍ୟ ରବି ବର୍ମାଙ୍କ ପ୍ରେସର ଅନୁକରଣରେ ଏବଂ ଲୋକପ୍ରିୟତାକୁ ଦୃଷ୍ଟିରେ ରଖି ଭାରତର ବିଭିନ୍ନ ସ୍ଥାନରେ ଲିଥୋ ପ୍ରେସ୍‌ମାନ ପ୍ରତିଷ୍ଠା ହେଲା । ରବିବର୍ମାଙ୍କ ଚିତ୍ର ଓ ଲିଥୋ ପ୍ରିଣ୍ଟର ପ୍ରଶସ୍ତି କେବଳ ଭାରତ ମଧ୍ୟରେ ସୀମିତ ନଥିଲା । ଏହାର ପ୍ରଭାବ ଜର୍ମାନୀ, ଫ୍ରାନ୍ସ ତଥା ଅନ୍ୟାନ୍ୟ ୟୁରୋପୀୟ ସହରମାନଙ୍କରେ ଅନୁଭୂତ ହୋଇଥିଲା ।

ମୁଁ ମୋ ବକ୍ତବ୍ୟ ଆରମ୍ଭରୁ ପତିତପାବନ ଗାନ୍ଧି ଓ ବଳିଦାନ କ୍ୟାଲେଣ୍ଡରର ଚିତ୍ର ସଂପର୍କରେ ସୂଚନା ଦେଇଥିଲି । କିନ୍ତୁ ଏହି ଧରଣର ଅନେକ ଚିତ୍ର ଲୋକଙ୍କ ମନରେ ଅସହଯୋଗ ଆନ୍ଦୋଳନ ଓ ସ୍ୱାଧୀନତା ଆନ୍ଦୋଳନ ପ୍ରତି ଶ୍ରଦ୍ଧା ଓ ବିଶ୍ୱାସ ଉଦ୍ରେକ କରିଦେଇଥିଲା । ଏସବୁ ଚିତ୍ରରେ ଭାରତମାତାଙ୍କୁ ବିଭିନ୍ନ ଭାବରେ ଚିତ୍ରଣ କରାଯାଇଥିଲା । ଅବନୀନ୍ଦ୍ରନାଥଙ୍କ ଭାରତ ମାତା ଯଦି ବଙ୍ଗ ଲଳନା ଭଳି ପ୍ରତେ ହେଉଥିଲେ ଏସବୁ ଚିତ୍ରର ଭାରତ ମାତା ମରାଠୀ ଭଳି, ତାମିଲ ବା



ଭାରତ ମାତାଙ୍କୁ ସୁଭାଷ ଚନ୍ଦ୍ର ବୋଷ ନିଜ ମସ୍ତକ ଅର୍ପଣ କରୁଛନ୍ତି, କ୍ୟାଲେଣ୍ଡର ଚିତ୍ର । ଦିଲ୍ଲୀର ବ୍ୟକ୍ତିଗତ ସଂଗ୍ରହରେ ଅଛି

କେରଳୀ ଭଳି ଦେଖାଗଲେ । Message of Love, ପ୍ରେମର ବାର୍ତ୍ତା ଶୀର୍ଷକ ଚିତ୍ରରେ ଭାରତ ମାନଚିତ୍ର ଉପରେ ମଦର୍ ଇଣ୍ଡିଆ (ଭାରତମାତା)ଭାରତର ଜାତୀୟ ପତାକା ଘେନି ଠିଆ ହେଇଛନ୍ତି ଓ ଭାରତବାସୀଙ୍କୁ ଅଭୟ ପ୍ରଦାନ କରୁଛନ୍ତି । ଏହି ଚିତ୍ରଟି ଅବଶ୍ୟ ଭାରତର ସ୍ୱାଧିନତା ପରର । ଏଭଳି ଭାରତମାତା ଚିତ୍ରମାନଙ୍କରେ, ଭାରତମାତା ବେଳେବେଳେ ଲକ୍ଷ୍ମୀ ଓ ସରସ୍ୱତୀ ଭାବେ, କିନ୍ତୁ ଅଧିକାଂଶ ସମୟ ଦୁର୍ଗତି ନାଶିନୀ ଦୁର୍ଗାଭାବେ ଚିତ୍ରିତ । Message of Love ଚିତ୍ରରେ ବଲ୍ଲଭଭାଇ ପଟେଲ, ଚକ୍ରବର୍ତ୍ତୀ ରାଜଗୋପାଳଚାରୀ, ଜବାହାରଲାଲ ନେହେରୁ ଓ ରାଜେନ୍ଦ୍ର ପ୍ରସାଦଙ୍କୁ ମଧ ଦୈବୀ ଶକ୍ତି ବା ଦିବ୍ୟଶକ୍ତି ଧାରୀ ଜନନେତା

ଭାବେ ଚିତ୍ରଣ କରାଯାଇଛି । ସେମାନଙ୍କ ସହିତ ସ୍ୱର୍ଗରୁ ଆଶିଷ ପ୍ରଦାନ କରୁଛନ୍ତି ଯୀଶୁ, ଗାନ୍ଧି ଓ ବୁଦ୍ଧ, ସୁଭାଷ ଓ ବିବେକାନନ୍ଦ ଯେଉଁମାନେ ଏହି ଚଳନ୍ତି ଦେବତାମାନଙ୍କ ଉପସ୍ଥିତିକୁ ସାଦରେ ଗ୍ରହଣ କରୁଛନ୍ତି ।

ପରେ ପରେ ବିଭିନ୍ନ କମ୍ପାନୀ ଭାରତମାତାଙ୍କୁ ନିଜ ବ୍ୟବସାୟର ଅଭିବୃଦ୍ଧି ପାଇଁ ଲେବଲ୍ ଓ କ୍ୟାଲେଣ୍ଡର ଭାବେ ବ୍ୟବହାର କରିବା ଦେଖାଯାଇଛି । ୧୯୪୦ ମସିହାର Sunlight Soap ର ଗୋଟିଏ କ୍ୟାଲେଣ୍ଡରରେ ରାଜା ରବି ବର୍ମାଙ୍କ ପୁରୁଣା ଚିତ୍ରକୁ ପୁଣି ବ୍ୟବହାର କରାଯାଇଛି ଏଠାରେ ଭାରତ ମାତା



ସୁଭାଷ ବଳିଦାନ, କ୍ୟାଲେଣ୍ଡର ଚିତ୍ର, ଆନୁମାନିକ ସମୟ ୧୯୪୦ ମସିହା ।
ଓସିଆନ୍ ସଂଗ୍ରହ, ବମ୍ବେରେ ଅଛି, ସୌଜନ୍ୟ ନେଭିଲ୍ ତୁଳୀ ।



ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ନେତା କେଶବ ବଳୀରାମ ହେଡ୍‌ଗେଓ୍ୱାର ଏବଂ ମାଧବ ସଦାଶିବ ଗୋଲଓ୍ୱାଲ୍‌କର । ୧୯୪୦ମସିହା, ଜ୍ୟୋତିନ୍ଦ୍ର ଜୈନଙ୍କ ବ୍ୟକ୍ତିଗତ ସଂଗ୍ରହରେ ଅଛି ।



ଆକବରଙ୍କ କବରଖାନାରେ କୃଷ୍ଣଲୀଳା, କୋଲାଜ୍ ଚିତ୍ର, ଆନୁମାନିକ ସମୟ, ୧୯୩୯–୪୦, ଜ୍ୟୋତିନ୍ଦ୍ର ଜୈନଙ୍କ ବ୍ୟକ୍ତିଗତ ସଂଗ୍ରହରେ ଅଛି ।



ମହାତ୍ମା ଗାନ୍ଧିଙ୍କୁ ରାମଚନ୍ଦ୍ର ଆଶୀର୍ବାଦ କରୁଛନ୍ତି, କୋଲାଜ୍, ବ୍ୟକ୍ତିଗତ ସଂଗ୍ରହ



୧୯୨୯ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ନିର୍ବାଚିତ ହେବାପରେ କଳ୍କୀ ରୂପରେ ଜବାହରଲାଲ ନେହେରୁ । ଜ୍ୟୋତିନ୍ଦ୍ର ଜୈନଙ୍କ ବ୍ୟକ୍ତିଗତ ସଂଗ୍ରହରେ ଅଛି ।



**କାମଧେନୁ, ୧୯୦୦ ମସିହା, ବମ୍ବେର ରବିବର୍ମା ପ୍ରେସ୍‌ରେ ମୁଦ୍ରିତ, ଜ୍ୟୋତିନ୍ଦ୍ର ଜୈନଙ୍କ ବ୍ୟକ୍ତିଗତ ସଂଗ୍ରହରେ ଅଛି ।**

ହାତରେ ପଦ୍ମଫୁଲ ଧରି ଲକ୍ଷ୍ମୀ ଭାବରେ ଉଭା ହୋଇଛନ୍ତି । ନିଉ ଇଣ୍ଡିଆ ରେୟନ୍ ମିଲ୍‌ର ଗୋଟିଏ ଲେବଲ୍ ଚିତ୍ରରେ ଭାରତ ମାନଚିତ୍ର ଉପରେ ତ୍ରିଶୂଳ ଓ ଅରଟ ଚିହ୍ନ ଅଙ୍କିତ ତ୍ରିରଙ୍ଗା ଧରି ଠିଆ ହୋଇଥିବା ଚିତ୍ର କୌତୂହଳୋଦ୍ଦୀପକ । ମନେହୁଏ ଏହି ଚିତ୍ରଭାବନାଟି ଭାରତ ସ୍ୱାଧୀନ ହେବା ପୂର୍ବର ଚିତ୍ର ।

୧୯୪୦ ମସିହା ସମୟର ଆଉ କେତୋଟି ଭାରତ ମାତା ଚିତ୍ର କୋଲାଜ୍ ପଦ୍ଧତିରେ ପ୍ରସ୍ତୁତ । ନାଥଦ୍ୱାରାର ଫଟୋବନ୍ଧାଇ କାରଖାନାର ଗୋଟିଏ ଭୂଦୃଶ୍ୟ

ଉପରେ ଅନ୍ୟ ଗୋଟିଏ କ୍ୟାଲେଣ୍ଡରରୁ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟର ଅବତାରଣାକୁ ପ୍ରାଧାନ୍ୟ ଦେଲାଭଳି କିଛି ଚିତ୍ର କାଟି ଆଣି ଯୋଡ଼ି ଦିଆ ଦେଇଛି । ଚିତ୍ରଟିରେ ସୁଭାଷ ଚନ୍ଦ୍ର ବୋଷ ନିଜ ମୁଣ୍ଡଟିକୁ କାଟିଦେଇ ନିଜ ହାତରେ ଭାରତ ମାତାଙ୍କୁ ଅର୍ପଣ କରୁଛନ୍ତି ଓ ପାଖରେ ଶ୍ରୀକୃଷ୍ଣଙ୍କ ବଂଶୀବାଦନ ଚିତ୍ର ଏବଂ ଆକାଶରେ ଜହ୍ନ ଓ ତା' ତଳଭାଗରେ ସୁଭାଷ ବୋଷ ସାଧା (civilion) ପୋଷାକରେ ଦେଖା ଦେଉଛନ୍ତି । ଏହି ଚିତ୍ରରେ ଭାରତମାତା ଦୁର୍ଗା ସ୍ୱରୂପିଣୀ, ହାତରେ ତ୍ରିଶୂଳ ଓ ବରଦମୁଦ୍ରା, ପାଖରେ ସିଂହ ଓ ପାଦତଳେ ବ୍ରିଟିଶ ୟୁନିୟନ୍ ଜାକ୍ ପତାକାକୁ ଗଳବନ୍ଧ ଭଳି ବ୍ୟବହାର କରିଥିବା ଗୋଟିଏ ବିକଟକାୟ ମଗର ମୁଖ ବାଦାନ୍ୟ କରି ସୁଭାଷ ବୋଷଙ୍କୁ ଅନେଇ ରହିଛି । ଏଠାରେ ଭାରତମାତାଙ୍କ ପାଦତଳେ ସ୍ତୁପୀକୃତ ମୁଣ୍ଡଗୁଡ଼ିକୁ ଲକ୍ଷ୍ୟ କଲେ ଦେଖି ହେଉଛି ରାଜେନ୍ଦ୍ର ପ୍ରସାଦ, ବାଲ୍ ଗଙ୍ଗାଧର, ଭଗତ ସିଂହ, ମଦନମୋହନ ମାଲବ୍ୟ ଇତ୍ୟାଦି ଜାତୀୟ ନେତାଙ୍କ ଉପସ୍ଥିତି ।

ଭାରତ ମାତା ବା ସୁଭାଷ ବଳିଦାନର ଅନ୍ୟଗୋଟିଏ ଚିତ୍ରରେ ପ୍ରଥମ ଚିତ୍ର ଅନୁରୂପ ଯୁଦ୍ଧ ପୋଷାକ (Uniform) ପିନ୍ଧି ସୁଭାଷ ଚନ୍ଦ୍ର ବୋଷ ନିଜ କଟା ମୁଣ୍ଡକୁ ଭାରତ ମାତାଙ୍କ ପାଖରେ ଅର୍ପଣ କରୁଛନ୍ତି । ଏହି ଚିତ୍ରର back ground ବା ପୃଷ୍ଠ ଭୂମିରେ ଲାଲକିଲାର ଚିତ୍ର ଯାହାର ଶୀର୍ଷରେ ଜାତୀୟ ପତାକା ଲହରାୟିତ । ପୁଣି ମେଘମାଳାଙ୍କୁ ଭେଦ କରି ସୁଭାଷ ଚନ୍ଦ୍ର ବୋଷେ ଦୁଇଥର ଆମକୁ ଦର୍ଶନ ଦେଉଛନ୍ତି । ଥରେ କଂଗ୍ରେସ ଟୋପି, ଧଳା ଧୋତି ଓ କୁର୍ତ୍ତା ପିନ୍ଧି ହାତରେ ଜାତୀୟ ପତାକା ଧରି ବଙ୍ଗୀୟ ଅସ୍ମିତାର ସମସ୍ତ ସନ୍ତକ ସହିତ ପୂର୍ଣ୍ଣାବୟବ ସ୍ୱରୂପ ଭାବେ ଆଉବେଳେ ଉର୍ଦ୍ଧ୍ୱାକାଶରେ ସହାସ୍ୟ ବଦନରେ । ମନେହୁଏ ବଳିଦାନ ସିରିଜ୍‌ର ଅନେକ ଚିତ୍ର, ସୁଭାଷ ବୋଷଙ୍କ ଏ ଜାତି ଉଦ୍ଦେଶ୍ୟରେ ଦେଇଥିବା ଆହ୍ୱାନ, "ତମେ ମୋତେ ରକ୍ତ ଦିଅ ମୁଁ ତୁମକୁ ସ୍ୱାଧିନତା ଦେବି"ର ରୂପାୟନ । ଏହି ଚିତ୍ରଗୁଡ଼ିକ ୧୯୩୦ ରୁ ୧୯୪୦ ମଧ୍ୟରେ ପ୍ରସ୍ତୁତ । ପୁଣି ଏହି ଚିତ୍ର ମଧ୍ୟରେ ଅଛି ଶ୍ରୀରାମଚନ୍ଦ୍ର ମହାତ୍ମା ଗାନ୍ଧିଙ୍କୁ ଆଶୀର୍ବାଦ ଦେଉଥିବା ଛବି ଏବଂ ପଣ୍ଡିତ ଜବାହାରଲାଲ ନେହୁରୁ ୧୯୨୯ ଲାହୋର ଅଧିବେଶନରେ କଂଗ୍ରେସ ପାର୍ଟିର ସଭାପତି ଭାବେ ନିର୍ବାଚିତ ହେବା ପରେ କଂଗ୍ରେସ ପତାକା ଉଡ଼ାଇ ଘୋଡ଼ା ଛୁଟାଇ ମାଡ଼ି ଯାଉଥିବାର ଚିତ୍ର ଗୁରୁତ୍ୱପୂର୍ଣ୍ଣ । ଉପରୋକ୍ତ ଚିତ୍ରଗୁଡ଼ିକ ସହିତ ଆମ ଚିନ୍ତା ରାଜ୍ୟକୁ ଦୋହଲାଇ ଦେଲା ଭଳି

ଅନ୍ୟ ତିନୋଟି କୋଲାଜ୍ । ଗୋଟିକରେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ହେଡ୍‌ଗେଓ୍ୱାର ଏବଂ ଗୋଲଓ୍ୱାକର ଗୋଟିଏ ନାଥଦ୍ୱାରା ପ୍ରାସାଦର ଅଗଣାରେ ମୁହାଁମୁହିଁ ହୋଇ ବସି ଗଭୀର ଭାବେ ଚିନ୍ତାମଗ୍ନ । ଆକାଶରେ ଜହ୍ନ । ଅନ୍ୟ ଗୋଟିଏ ଚିତ୍ରରେ ସିକନ୍ଦରାରେ ଥିବା ମୋଗଲ ସମ୍ରାଟ ଆକବରଙ୍କ କବର (ମୋସେଲମ୍) ଉପରେ କୃଷ୍ଣଠିଆ ହୋଇ ବଂଶୀବାଦନ କରୁଥିବା ଚିତ୍ର । ଜଣେ ବିଜେତାର କବର ଉପରେ ହିନ୍ଦୁ ଦେବତାଙ୍କୁ ଠିଆ କରାଇ, ପୁଣି ତାଙ୍କ ଚତୁର୍ଦ୍ଦିଗେ ସଖୀମାନଙ୍କୁ ସଜେଇ ଦେଇ ରାସ ରଚିବାର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ହେଲା ବିଜେତାର କବର ବା ଅଧିକୃତ ଇଲାକାକୁ ପ୍ରତୀକାତ୍ମକ ଭାବେ କଳ୍ପନାରେ ପୁନଃ ଦଖଲ କରିବା । ତୃତୀୟ ଚିତ୍ରଟିରେ ଗୋମାତା ନିଜ ଅଙ୍ଗରେ ତେତିଶିକୋଟି ଦେବତାଙ୍କୁ ବହନ କରି ଉଭା ହୋଇଛନ୍ତି । ଜଣେ ରାକ୍ଷସରୂପୀ ଦୁର୍ବୃତ୍ତ ଖଣ୍ଡା ଉଞ୍ଚାଇ ଗୋମାତାଙ୍କୁ ହତ୍ୟା କରିବା ପାଇଁ ଉଦ୍ୟତ ହେଉଥିବାବେଳେ ଆଉ ଜଣେ ସମ୍ଭ୍ରାନ୍ତ ବ୍ୟକ୍ତି ତାକୁ ସେହି ଅପକର୍ମରୁ ନିବୃତ୍ତ କରୁଛନ୍ତି । ଗାଈଟି ପାଖରେ ଜଣେ ବଦାନ୍ୟ ବ୍ୟକ୍ତି ଦଳେ ତୃଷାର୍ତ୍ତଙ୍କୁ କ୍ଷୀର ପିଇବାକୁ ଦେଉଥିବାର ଚିତ୍ର ଅଙ୍କନ କରାଯାଇଛି । କ୍ଷୀର ଗ୍ରହଣ କରୁଥିବା ପ୍ରଥମ ବ୍ୟକ୍ତି ଜଣେ ମୁସଲମାନ୍ । ଏଥିରେ ଦିଆଯାଇଥିବା ଗୋଟିଏ କେପ୍‌ସନ୍ (Caption) ରେ ଲେଖାଯାଇଛି– ଗାଈର ରକ୍ତ ଓ ମାଂସ ଆଲ୍ଲାଙ୍କ ପାଖରେ ନ ପହଞ୍ଚିପାରେ କିନ୍ତୁ ତମର ବିନିଗ୍ରହ ନିଶ୍ଚୟ ଆଲ୍ଲାଙ୍କ ପାଖରେ ପହଞ୍ଚିବ ।

ମୁଁ ଆପଣମାନଙ୍କୁ ଆଠ ନଅଟି ଚିତ୍ର ସଂପର୍କରେ ସୂଚନା ଦେଇସାରିଛି । ସେଥିମଧ୍ୟରୁ ଚାରୋଟି କୋଲାଜ୍‌କୁ ବାଦ ଦେଲେ ଅନ୍ୟ ପାଞ୍ଚଟି ହାତ ଅଙ୍କାଚିତ୍ର କ୍ୟାଲେଣ୍ଡର ଭାବେ ମୁଦ୍ରିତ । ଏହି ଚିତ୍ରଗୁଡ଼ିକର ବିଷୟକ୍ରମ ବା କାହାଣୀ ଓ ଅଭିପ୍ରାୟକୁ ଗୁରୁତର ସହିତ ବିଚାର କଲେ କେତୋଟି ମଜାକଥା ଜଣାପଡ଼େ । ପ୍ରଥମ ଓ ଅସଲ ଉଦ୍ଦେଶ୍ୟ ହେଲା ଭାରତମାତା ପ୍ରତୀକ ମାଧ୍ୟମରେ ଏକ ଅଖଣ୍ଡ ଓ ସ୍ୱାଧୀନ ଭାରତର କଳ୍ପନା କରିବା । ଆଉ କେତେକ ଭାରତ ମାତା ଚିତ୍ରରେ ଭାରତ ମାତାଙ୍କର ହାତ ଓ ପାଦ ଶୃଙ୍ଖଳ ବଦ୍ଧ ହୋଇଥିବା ଏବଂ ଅନ୍ୟକେତେକ ଚିତ୍ରରେ ଶିକୁଳିକୁ ଛେଦନ କରି ଭାରତମାତାଙ୍କୁ ମୁକ୍ତ କରିବା ମଧ୍ୟ ଦର୍ଶାଯାଇଛି । ଏହି ମୂଳ ଉଦ୍ଦେଶ୍ୟ ସହିତ ଯୋଡ଼ା ହୋଇଛି ତ୍ୟାଗ, ଏଭଳିକି ପ୍ରାଣବଳି ଦେବାର ସନ୍ଦେଶ । ଚିତ୍ରଗୁଡ଼ିକର ପ୍ରକ୍ଷିପ୍ତ, ଭୂମି ଖୁବ୍ ବିସ୍ତୃତ । ଏବଂ ଏହାର ସାଂପ୍ରତିକତା ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ବହୁ ସଂଖ୍ୟାରେ ମୁଦ୍ରିତ କ୍ୟାଲେଣ୍ଡର

ମାଧ୍ୟମରେ ବହୁ ଲୋକଙ୍କ ପାଖରେ ପହଞ୍ଚିବାର ଏହା ନିଶ୍ଚିତ ଭାବେ ଏକ ପରୀକ୍ଷିତ ଉପାୟ । କିନ୍ତୁ କୋଲାଜ୍‌ଗୁଡ଼ିକରେ ଆଞ୍ଚଳିକତାର ପରିକଳ୍ପନା ଭିନ୍ନ ଧରଣର । ଭାରତୀୟ ଜାତୀୟତାବାଦକୁ ଉଦ୍‌ଘୋଷଣା କରୁଥିବା ସୁଭାଷ ବୋଷ ଓ ଭଗତ ସିଂହଙ୍କ ଛବିକୁ ନାଥଦ୍ୱାରାରେ ଅଙ୍କିତ ଭୂଦୃଶ୍ୟ ଉପରେ ଯୋଡ଼ି ଏକ ଆଞ୍ଚଳିକ ଭାବକୁ ବା ଚିତ୍ରକୁ ଜାତୀୟ ମାନ୍ୟତା ଦେବାର ପ୍ରଚେଷ୍ଟା ନିହିତ ଅଛି । ନାଥଦ୍ୱାରାର ଭୂଦୃଶ୍ୟ ମଧ୍ୟରେ ଏକ କାଳ୍ପନିକ ଅଫୁରନ୍ତ ପ୍ରକୃତିର ଦୃଶ୍ୟ ସମୟକ୍ରମେ ଜାତୀୟତାବାଦ ସହିତ ଯୋଡ଼ି ହେଇଯାଇଛି । ଏହାର ସୁଦୂର ପ୍ରସାରୀ ପ୍ରଭାବ ଆଜିକାଲିର ସ୍କୁଲ ଛାତ୍ର ଛାତ୍ରୀଙ୍କୁ ଏଭଳି ଭାବେ ଗ୍ରାସିଛି ଯେ ଆଜି ବି ଭୂଦୃଶ୍ୟ ଅଙ୍କନ କରିବା ପାଇଁ ପିଲାଙ୍କୁ କହିଲେ ସେମାନେ ଏଭଳି ଏକ କାଳ୍ପନିକ ଦୃଶ୍ୟ ଅଙ୍କନ କରିଦେଉଛନ୍ତି । ପଣ୍ଡିତ ନେହୁରୁଙ୍କୁ ଚିତ୍ରରେ କଲ୍‌କୀଭାବେ ପରିକଳ୍ପନା କରାଯାଇଛି । କଲ୍‌କୀ ଭଗବାନ ବିଷ୍ଣୁଙ୍କର ଦଶମ ଅବତାର, ମ୍ଳେଛ ନିଧନ କରିବା ପାଇଁ ତାଙ୍କର ଆବିର୍ଭାବ । ନେହୁରୁଙ୍କୁ କଲ୍‌କୀ ସହିତ ତୁଳନା କରିବାର ଉଦ୍ଦେଶ୍ୟ ହେଲା ଜଣେ ରାଜନୈତିକ ନେତାଙ୍କୁ ଦେବତାର ଆସନ ଦେବା । ଧାର୍ମିକ ଜାତୀୟତା ବା ଧର୍ମୀୟ ଜାତୀୟତା (Religious nationalism) ଭାରତ ବର୍ଷର ପ୍ରାକ୍ ସ୍ୱାଧୀନତା ଓ ସ୍ୱାଧୀନତା ପର ସମୟରେ ବିଭିନ୍ନ ଆଞ୍ଚଳିକ କାହାଣୀ ଓ ଧାରାକୁ ଆପଣେଇଲା ଯାହା ସହିତ ସ୍ଥାନୀୟ ସଂସ୍କୃତିର ସଂପର୍କ ରହିଥିଲା ।

ଏହି ଚିତ୍ରଗୁଡ଼ିକର ପର୍ଯ୍ୟାଲୋଚନାରୁ ଜଣାପଡ଼ିବ କିଭଳି ସାହିତ୍ୟ କେବଳ ନୁହେଁ ଚିତ୍ରଗୁଡ଼ିକ ମଧ୍ୟ ଅତି ପ୍ରଭାବଶାଳୀ ଏବଂ ପରିକଳ୍ପିତ ଦୃଶ୍ୟପଟୁତା ଫଳରେ ଜନମାନସକୁ ଉଦ୍‌ବୁଦ୍ଧ କରିବା ସହ ଜାତୀୟ ଅସ୍ମିତାକୁ ମୋଡ଼ ଦେବା କାମ ଚିତ୍ରଶାଳାରେ କରାଯାଉଥିଲା । କାମଧେନୁ ବା ଗୋମାତା ଚିତ୍ର ମାଧ୍ୟମରେ ଇସଲାମ ଧର୍ମକୁ ହିନ୍ଦୁଧର୍ମ ଆଡ଼କୁ ଆକୃଷ୍ଟ କରିବା ବା ଇସ୍‌ଲାମ ଧର୍ମୀୟ ଜାଗାଟିକୁ ବୈଷ୍ଣବ ମତବାଦ ଦ୍ୱାରା ପୁନଃ ଦଖଲ କରିବା ଭିତରେ ମୁସଲମାନମାନଙ୍କ ଭାରତ ଦଖଲର ପ୍ରତିଶୋଧ ସ୍ୱରୂପ ସେମାନଙ୍କ ଭାବରାଜ୍ୟକୁ ଅକତିଆର କରିନେବା ମଧ୍ୟ ଚିତ୍ର ଦ୍ୱାରା ସମ୍ଭବ ।

ଆପଣମାନେ ଭାବୁଥିବେ ଏସବୁ ଚିତ୍ର ପ୍ରସଙ୍ଗ, ଓ ପୁଞ୍ଜିକୟାଁର ଫକୀରଙ୍କ ସହିତ ଜାତୀୟ କବି ବାଞ୍ଛାନିଧି ମହାନ୍ତିଙ୍କ କି ସଂପର୍କ ଥାଇପାରେ । କବି ବାଞ୍ଛାନିଧି ଏକ ବ୍ୟକ୍ତି ବିଶେଷ କେବଳ ନୁହନ୍ତି, ସେ ଆମ ଜାତୀୟ ଜୀବନର ଏକ ସଂଘର୍ଷମୟ

କାଳଖଣ୍ଡକୁ ଆବୋରି ବସିଛନ୍ତି । ସେହି କାଳଖଣ୍ଡ ଆମ ପାଇଁ ଘୋର ବିପର୍ଯ୍ୟୟର ସମୟ । ଏହି ସମୟ କବିତା, ସାହିତ୍ୟ, କଳା, କାହାଣୀ ଓ ଧର୍ମବିଶ୍ୱାସ ଭଳି ସଂସ୍କୃତିର ସ୍ପନ୍ଦିତ ପାଖୁଡ଼ାଗୁଡ଼ିକ ଯୋଡ଼ିଯାଡ଼ି ଆମ ଅସ୍ମିତାର ଫୁଲଟିକୁ ସଜାଡ଼ି ଦେଇଛି । ଫୁଲଟିଏ ଫୁଟିଯାଇ ତାହା ଭାରତମାତା, ଗୋମାତା ବା ବଳିଦାନ ଚିତ୍ର ଭିତରେ ଗୋଟିଏ ଜାତିର ସୁଗନ୍ଧକୁ ବିତରଣ କରୁଛି । ଏସବୁ ସର୍ଜନ ଉପାଦାନ ପରସ୍ପରର ପରିପୂରକ ।

ସ୍ୱାଧିନତା ସଂଗ୍ରାମରେ ଭାଗନେଇଥିବା ଗାଆଁ ଗଣ୍ଡାର ଲୁକ୍କାୟିତ ପ୍ରତିଭାମାନଙ୍କୁ ଚିହ୍ନଟ କରିବାର ବେଳ ଆସିଛି । ଏଠାରେ ଗୋବରା ଗାନ୍ଧି ବାଞ୍ଛାନିଧି ପଟ୍ଟନାୟକଙ୍କ ସାଧନା ଓ ତ୍ୟାଗର କଥା ସ୍ମରଣକୁ ନିଆଯାଇପାରେ । ଯଦିଓ ସେ କବି କିମ୍ବା ଚିତ୍ରକର ନଥିଲେ ତଥାପି ତାଙ୍କର କର୍ମ ଜାତୀୟତାବାଦର ଆଦର୍ଶ ।

ଆମର ତ ପୁଣି ଏବେ ହଠାତ୍ ମନେପଡ଼ିଯାଉଛି କାନ୍ତକବିଙ୍କ ଦ୍ୱାରା ରଚିତ ଉତ୍କଳ ମାତାଙ୍କ ବନ୍ଦନା ''ବନ୍ଦେ ଉତ୍କଳ ଜନନୀ ।'' ପୁଣି ଓଡ଼ିଆ ଜାତିଟାକୁ ସୁସୁପ୍ତିରୁ ଜାଗରୁକ କରିବାର ଆବଶ୍ୟକତାରୁ ଏ ସଂଗୀତର ଆଦର । କାହିଁ ଆଜିଯାଏଁ ଉତ୍କଳ ମାତାର ଚିତ୍ରଟିଏ ଆମେ ଆଙ୍କି ପାରିନୁ । ଉତ୍କଳ ଜନନୀ ଭାରତମାତାଙ୍କ ସହିତ କିଭଳି ସଂପର୍କିତ ହେବେ ? ଭଗିନୀ ନା ସପତ୍ନୀ ନା



ତାରକସି ଶିଳ୍ପ କାରଖାନାରେ ମଧୁବାବୁ, ଶିଳ୍ପୀ ମୁରଲୀଧର ଟାଲି, ଜଳରଙ୍ଗ



ବନ୍ୟା ପ୍ରପୀଡ଼ିତ ଅଞ୍ଚଳରେ ଗୋପବନ୍ଧୁ, ଶିଳ୍ପୀ ପୂର୍ଣ୍ଣଚନ୍ଦ୍ର ସିଂହ

ଆଉ କିଛି - ତା'ର ଉତ୍ତର ଦେବା ଏତେ ସହଜ ମନେ ହେଉ ନାହିଁ । ଭାରତ ମାତାଙ୍କ ବିଭବ ବର୍ଣ୍ଣନା ଯାହା ଉତ୍କଳ ଜନନୀଙ୍କ ବିଭବ ବର୍ଣ୍ଣନା ବି ସେୟା, "ବନ୍ଦେ ମାତରଂ, ସୁଜଳାଂ, ସୁଫଳା, ଶସ୍ୟଶ୍ୟାମଳାଂ, ମାତରଂ ।" ଚିତ୍ର ହିଁ ଏହି କଠିନ ପ୍ରଶ୍ନର ଉତ୍ତର ଦେବାରେ ସକ୍ଷମ ହେବ । ଓଡ଼ିଆଣୀର ବେଶଭୂଷାରେ ଉତ୍କଳ ଜନନୀ ଚିତ୍ର । ଏଇଠି ଫୁଟି ଉଠିବ ଓଡ଼ିଆ ଅସ୍ମିତା । ସଂଘୀୟ ବ୍ୟବସ୍ଥା (Federal Structure) ର ଶାସନ ମୁଖ୍ୟଙ୍କ ଭଳି ପ୍ରଧାନମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ନୁହେଁ । ଏକାଭାବ, ଦୁଇଟି ଅଭିବ୍ୟକ୍ତି ଦୁଇଟି ଭିନ୍ନଶୈଳୀରେ ଅଙ୍କିତ ଭାରତମାତା । ଏବେ ଏବେ ଉତ୍କଳ ଦିବସ ପାଳନ ଆଡ଼ମ୍ବର ସହକାରେ ହେଲାଣି । ଗୋଟିଏ ଅଭାବନୀୟ ପରିସ୍ଥିତିରୁ ଉତ୍କଳ ଦିବସ ପାଳନର ଆରମ୍ଭ ଯେଉଁ ଆୟୋଜନ ସହିତ ସରକାରୀ କର୍ମଚାରୀ ଭାବେ ମୁଁ ବି ସଂପୃକ୍ତ ଥିଲି । ଜୟପ୍ରକାଶ ନାରାୟଣ ସଭା କରିବାକୁ ଭୁବନେଶ୍ୱର ଆସିଛନ୍ତି । ପ୍ୟାରେଡ଼ ପଡ଼ିଆରେ ସଭା କରିବାକୁ ସରକାର ଅନୁମତି ଦେବେନି । ତେଣୁ ପ୍ୟାରେଡ଼ ପଡ଼ିଆରେ ଉତ୍କଳ ଦିବସ ପାଳନ ହେବ । ନାଚଗୀତର ଆସର ଜମିବ । ଆତସବାସଜିରେ ଆକାଶ ଛାଇ ହେବ । ଓଡ଼ିଶା ମାନଚିତ୍ର ଅଙ୍କନ କରାଯିବ । ମୁଁ ଉତ୍କଳ ଜନନୀଙ୍କର ଚିତ୍ରର ପ୍ରସ୍ତାବ ଦେଇଥିଲି । ସରକାର ଗ୍ରହଣ କଲେନି । ସନ୍ଦେହ ହେଲା, ଉତ୍କଳ ଜନନୀ ଓ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥି କାଳେ ଏକାକାର ହୋଇଯିବେ । ମକ୍‌ବୁଲ୍ ଫିଦା ହୁସେନ୍ ତ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କୁ ଦୁର୍ଗା ମାତାରେ ରୂପାନ୍ତର

କରିସାରିଥିଲେ, Indira is India ଇନ୍ଦିରା ଲୋକମାତା । ବେଳେ ବେଳେ ଚିତ୍ର, ଭାଷା ଅପେକ୍ଷା ଅଧିକା କଥା କହିଥାଏ । ଅଧିକ ଶକ୍ତିଶାଳୀ ହୋଇଥାଏ ।

ଇରମର ସ୍ମୃତି କ'ଣ ଖାଲି ଗୋଟିଏ ସ୍ତମ୍ଭ । ସ୍ତମ୍ଭ ସ୍ମୃତିର କମନୀୟ ରୂପ ତ ନୁହେଁ । ବୀରତ୍ୱର, ବଳିଦାନର ରୂପ କାହାଣୀ ଏହି ସ୍ମୃତି ଭିତରେ ଉଜ୍ଜୀବିତ ହୋଇପାରେ । ଏହି ରୂପକାହାଣୀରେ ବାଞ୍ଛାନିଧି କ'ଣ ସୁଭାଷ ବୋଷଙ୍କ ସ୍ଥାନ ନେଇପାରିବେ ନାହିଁ ? ଏ ଅଞ୍ଚଳର ଓଡ଼ିଆ ଶିଳ୍ପୀ ତାହା ନିଷ୍ପତ୍ତି କରନ୍ତୁ ।

ଓଡ଼ିଶାର ଗୌରବ ଗାଥାକୁ ନେଇ ସ୍ୱାଧିନତା ପରେ ବହୁ ଓଡ଼ିଆ ଶିଳ୍ପୀ ଚିତ୍ର ଆଙ୍କିଛନ୍ତି । କିନ୍ତୁ ଇରମ ଓ ବାଞ୍ଛାନିଧିଙ୍କୁ ନେଇ ଚିତ୍ର ରଚନା କରାଯାଇନି । ଉପେନ୍ଦ୍ର ମହାରଥୀଙ୍କ ଗାନ୍ଧି ସିରିଜ୍‌ର ଚିତ୍ରକୁ ବିଚାରକୁ ନିଆଯାଇପାରେ । ବହୁଦିନ ତଳେ ସର୍ବୋଦୟ ମଣ୍ଡଳୀ ପକ୍ଷରୁ ଜାତୀୟବାଦୀ ଚିତ୍ରର ଗୋଟିଏ ପୁସ୍ତିକା ପ୍ରକାଶ ପାଇଥିଲା । ଓଡ଼ିଶାର ରାଜଭବନରେ ପରବର୍ତ୍ତୀ କାଳରେ ଏହି ଚିତ୍ରଗୁଡ଼ିକୁ ସଂରକ୍ଷିତ କରାଯାଇଥିଲା । ଯତ୍ନ ଅଭାବରୁ ଏଥିରୁ ବହୁଚିତ୍ର ନଷ୍ଟଭ୍ରଷ୍ଟ ହେଇଗଲାଣି । ''ଜୟିରାଜଗୁରୁଙ୍କୁ ଫାଶୀ'' ଜଳରଙ୍ଗର ଚିତ୍ରଟି ଉପରେ ଉଇ ଚରିଯାଇଥିବା ମୁଁ ସ୍ୱଚକ୍ଷୁରେ ଦେଖି ରାଜ୍ୟପାଳ ରାଜେନ୍ଦ୍ରନ୍ ମହୋଦୟଙ୍କୁ କହିଛି । ବାରବାଟୀ ଷ୍ଟାଡ଼ିୟମ୍‌ରେ ପ୍ରଦର୍ଶିତ ଅନେକ ଐତିହାସିକ ଚିତ୍ର ସଂପୂର୍ଣ୍ଣ ଅବହେଳିତ । କାନ୍ଥରେ ଦୋହଡ଼ ଚୂନ ଲିପା ହେଉଥିବାବେଳେ ସେ ଗୁଡ଼ିକ ବିକୃତ ହୋଇଯାଇଛି । କାହାର ସେଥିପ୍ରତି ନିଘା ନାହିଁ । ଏହି ଜାତୀୟତାବାଦୀ ଚିତ୍ରଗୁଡ଼ିକ ପ୍ରତି ଆମେ ଓଡ଼ିଆ ଲୋକେ ମୋଟେ ସଚେତନ ନୋହୁଁ । ଗୋପବନ୍ଧୁଙ୍କ ବନ୍ୟାଞ୍ଚଳ ପରିଦର୍ଶନ, ମଧୁସୂଦନଙ୍କ ତାରକସି ଶିଳ୍ପ କାରଖାନାର ଚିତ୍ର ଭଳି ଅନେକ ମୂଲ୍ୟବାନ ଜାତୀୟବାଦ ଚିତ୍ର ସଂପୂର୍ଣ୍ଣ ଅବହେଳିତ ।

କେରଳର ଯେଭଳି ରାଜା ରବି ବର୍ମା ଆମ ଓଡ଼ିଶାର ସେଭଳି ରାଜା ଶରତଚନ୍ଦ୍ର ଦେବ । ପ୍ରାଚ୍ୟ କାହାଣୀ ଓ ପାଶ୍ଚାତ୍ୟ ଢଙ୍ଗକୁ ଆଧାର କରି ସଂପୂର୍ଣ୍ଣ ନୂତନ ଭାବେ ତାଙ୍କ ଛବିଗୁଡ଼ିକ ରଚିତ । ଚନ୍ଦ୍ର ପ୍ରଭାଶ୍ରମରେ ତାଙ୍କର ଅନେକ ଛବି ଏବେବି ଅବହେଳିତ ଅବସ୍ଥାରେ ରହିଛି । ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ଶିକ୍ଷା ପାଇଁ ସେ ଯତ୍ନବାନ ହେଇଛନ୍ତି । କବି, ଚିତ୍ରକର, ଶିକ୍ଷକ ଓ ଆଧ୍ୟାତ୍ମବାଦୀ ଶରତଚନ୍ଦ୍ର ଆମ ପାଖରେ ଏବେ ମଧ୍ୟ ଅପରିଚିତ । ବିଭୂତି କାନୁନ୍‌ଗୋଙ୍କ ନାଁରେ ଭୁବନେଶ୍ୱର କଳାମହାବିଦ୍ୟାଳୟ ନାମିତ ହେଇପାରିଲା ଅଥଚ ଖଲ୍ଲିକୋଟ କଳା ବିଦ୍ୟାଳୟର ପ୍ରତିଷ୍ଠାତା ଅଧ୍ୟକ୍ଷ ଶରତ ଚନ୍ଦ୍ରଙ୍କ ନାଁରେ

ମହାବିଦ୍ୟାଳୟଟି ନାମିତ ହୋଇପାରିଲାନି ।

ମହାତ୍ମା ଗାନ୍ଧିଙ୍କ ନିର୍ଦ୍ଦେଶରେ ହରିପୁର କଂଗ୍ରେସ ଅଧିବେଶନ ପାଇଁ ଚିତ୍ରଶିଳ୍ପୀ ନନ୍ଦଲାଲ ଅଙ୍କନ କରିଥିବା ଚିତ୍ରଗୁଚ୍ଛ (Haripura Posters) ର ଗୋଟିଏ ଥାକ ଓଡ଼ିଶାକୁ ଆସିଥିଲା ଓ ସ୍ୱରାଜ୍ୟ ଆଶ୍ରମରେ ପ୍ରଦର୍ଶିତ ହୋଇଥିଲା । ଏହି ଚିତ୍ରଗୁଚ୍ଛର ସନ୍ଧାନ ପାଇଁ ମୁଁ ସ୍ୱରାଜ୍ୟ ଆଶ୍ରମରେ ପହଞ୍ଚି ଯେଉଁଭଳି ଅବସ୍ଥାରେ କିଛି ଚିତ୍ର ପ୍ରଦର୍ଶିତ ହେଇଥିବା ଦେଖିଥିଲି ସେଥିରେ ମୋ ଫାକାସି ଉଡ଼ି ଯାଇଥିଲା । ପାଇଖାନାର କବାଟ ଉପରେ ଚିତ୍ରଟିଏ ଖଞ୍ଜା ଯାଇଥିଲା । ମହାତ୍ମା ଗାନ୍ଧି, ଗୋପବନ୍ଧୁ ଓ ମଧୁସୂଦନଙ୍କ ଦାୟାଦଙ୍କ ମନୋଭାବକୁ ଲକ୍ଷ୍ୟ କରନ୍ତୁ । ଆମେ ତ ସ୍ୱାଧୀନ ହୋଇଗଲୁଣି ଏହି ଚିତ୍ରର ଆବଶ୍ୟକତା କ'ଣ ? ଧନ୍ୟ ଏ ଓଡ଼ିଆ ଜାତି ।

ମୋର ବକ୍ତବ୍ୟ ଶେଷ କରିବା ପୂର୍ବରୁ ସମଗ୍ର କଥନିକାଟିକୁ ପାକୁଳେଇ କେତେକ ନିର୍ଯ୍ୟାସରେ ପହଞ୍ଚିବା ପାଇଁ ଚାହେଁ ଏବଂ ସେଗୁଡ଼ିକୁ ଏଠାରେ ଉଲ୍ଲେଖ କରୁଛି ।

୧. ବାଞ୍ଛାନିଧି ମହାନ୍ତି ଜଣେ ଅନନ୍ୟ ଜାତୀୟବାଦୀ କବି ଏବଂ ତାଙ୍କ କାବ୍ୟକବିତା ଓଡ଼ିଆ ଜାତିର ଅସ୍ପର୍ଶନୀୟ ଐତିହ୍ୟ । Intangible Heritage ସେ ସବୁ କାବ୍ୟ କବିତାକୁ ନେଇ ଗୋଟିଏ Golden Book ପ୍ରକାଶ ପାଉ । ଏ ସଂକ୍ରାନ୍ତରେ ଓଡ଼ିଆ ଭାଷା ବୋର୍ଡ଼ର ଆବାହକଙ୍କ ଜରିଆରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀକୁ ପ୍ରସ୍ତାବ ଦିଆଯାଉ ।

୨. ବାଞ୍ଛାନିଧିଙ୍କ ଗୀତର ଗ୍ରାମଫୋନ୍ ରେକର୍ଡ଼ଗୁଡ଼ିକୁ ସଂଗ୍ରହ କରାଯାଉ ଏବଂ ଅବଶିଷ୍ଟ ଗୀତଗୁଡ଼ିକୁ ସଂଗୀତ ଆକାରରେ ଗାନ କରାଯାଇ ସି.ଡ଼ି. ପ୍ରସ୍ତୁତ କରାଯାଉ ଏବଂ ବଜାରରେ ସେଗୁଡ଼ିକ ଲଭ୍ୟ ହେବାର ବ୍ୟବସ୍ଥା କରାଯାଉ ।

୩. ବାଞ୍ଛାନିଧିଙ୍କ ଗୀତଗୁଡ଼ିକର ସାଂପ୍ରତିକ ମୂଲ୍ୟବୋଧ ଅଛି । ଯେଉଁ ଧାଡ଼ିକ ପିଲାବେଳେ ମୋତେ ଉଦ୍‌ବୁଦ୍ଧ କରିଥିଲା–ଚକଚକ ଚାଇନା...ଇତ୍ୟାଦି ଓଡ଼ିଆ ହସ୍ତଶିଳ୍ପ ସଂକ୍ରାନ୍ତୀୟ । ଭାରତରେ ମିଳୁଥିବା ଧଳାମାଟିକୁ କାହିଁକି ଯେ China Clay କୁହାଯିବ ? ତା'ର କୌଣସି ଯଥାର୍ଥତା ନାହିଁ । ମହାତ୍ମା ଗାନ୍ଧି ଗ୍ରାମ୍ୟଶିଳ୍ପ, Rural Craft, Rural Art କଥା କହୁଥିଲେ । ଆମ ହସ୍ତଶିଳ୍ପର ନକ୍‌ସା, ଓଡ଼ିଶାରେ ମିଳୁଥିବା କଞ୍ଚାମାଲର ଗୁରୁତ୍ୱ ଓ ଶିଳ୍ପୀଙ୍କ ଅବସ୍ଥାର ପୁନଃ ଅବବୋଧ, ଓଡ଼ିଆ ଅସ୍ମିତାର ସଂରକ୍ଷଣ ପାଇଁ ଅତ୍ୟନ୍ତ ଜରୁରୀ । ଓଡ଼ିଆ ଭାଷା

କହିଲେ କେବଳ କଥିତ ଓ ଲିଖିତ ଭାଷା ନୁହେଁ । ଭାଷା ସମ୍ପର୍କିତ ଅନ୍ୟାନ୍ୟ ସାଂସ୍କୃତିକ ବିଭବର ବିଲୟ ଘଟିଲେ ଜାତିର ଔଜ୍ଜଲ୍ୟ କମିଯିବ ।

୪. ଅନେକ ଦିନ ହେଲା ଭଦ୍ରକରେ ଗୋଟିଏ କଳାମହାବିଦ୍ୟାଳୟ ପ୍ରତିଷ୍ଠା ହେଲାଣି । ଏହି ମହାବିଦ୍ୟାଳୟର ଯୁବଶିଳ୍ପୀଙ୍କୁ ନେଇ ବାଞ୍ଛାନିଧିଙ୍କ ଦେଶାତ୍ମବୋଧକ କବିତା ଉପରେ ଚିତ୍ରକର୍ମଶାଳାର ଆୟୋଜନ କରାଯାଉ । ଏ ଅଞ୍ଚଳର ବିଶିଷ୍ଟ ଶିଳ୍ପୀ ଅଶୋକ ମହାନ୍ତି କର୍ମଶାଳାର Resource Person ରହନ୍ତୁ । ମହାବିଦ୍ୟାଳୟର ଅଧ୍ୟକ୍ଷ ମନୋଜ କୁମାର ଭଟ୍ଟାଚାର୍ଯ୍ୟଙ୍କ ସୌଜନ୍ୟରେ ଏହା ଅନୁଷ୍ଠିତ ହେଉ ।



ଅନ୍ତିମ ଶଯ୍ୟାରେ ତିନିଜଣ ମହାପୁରୁଷ – ଗାନ୍ଧି, ଯୀଶୁ ଓ ବୁଦ୍ଧ । ଶିଳ୍ପୀ : ଉପେନ୍ଦ୍ର ମହାରଥି, ଜଳରଙ୍ଗ ।

